# ପଦାର୍ଥ ବିଦ୍ୟା ସାର ।

## ଦ୍ୱିତୀୟ ଭାଗ ।

## ଜ୍ୟୋତିଷ ବିଦ୍ୟା ।

### ଆଭାଷ ।

ଶିଷ୍ୟ କହିଲା । ହେ ଅବଧାନ ଭୂଗୋଳ ବୃତ୍ତାନ୍ତ ବିଷୟରେ ଆମ୍ଭର କଥାବାର୍ତ୍ତା ସମାପ୍ତ ହେଲା ଏବେ ଅନୁଗ୍ରହ କରି ଜ୍ୟୋତିଷ ବିଦ୍ୟା ବିବରଣ କିଛି ଶିକ୍ଷା ଦେବା ହେଉ ।

ଗୁରୁ । ଆମ୍ଭେ ଅତି ସନ୍ତୋଷ ହୋଇ ଦେବା ପୁଣି ତାହା ଆଗରେ ଜଗତର ଗୋଟିଏ ପ୍ରଧାନ ଧାରା ଅର୍ଥାତ ଆକର୍ଷଣ ଗୁଣ ବିଷୟରେ କିଛି ବୋଧ କରାଇବାକୁ ଆମ୍ଭର କର୍ତ୍ତବ୍ୟ । ଏହି ଗୁଣରେ ଈଶ୍ୱରଙ୍କ ସର୍ବ ସୃଷ୍ଟିବସ୍ତୁର ନାନା ସଂଯୁକ୍ତ ଭାଗ ପୁଣି ନିଜ ସ୍ଥାନରେ ରକ୍ଷା ହୁଅଇ ।

ଶିଷ୍ୟ । ପୃଥିବୀ, ଚନ୍ଦ୍ର, ଗ୍ରହଗଣ ସବୁ ଯେ ପ୍ରକାରେ ସୂର୍ଯ୍ୟକୁ ଘେରୁଛନ୍ତି ତାହା କି ଏହି ଆକର୍ଷଣ ଗୁଣରେ ଜଣା ଯାଏ ?

ଗୁରୁ । ହଁ ପୁଣି ସେ ବିଷୟରେ ବୋଧ ନ ହେଲେ ସେହି କଥା ବୁଝିବାକୁ ନ ପାର । ଏଣୁକରି ଏହି ଉପଦେଶ ଯେତେ କିଛି କଷ୍ଟ ହୁଅଇ ତେବେହେଁ ତାହାର ବିଷୟରେ ଭଲ କରି ଶିଖିବାର ଅତି ଉଚିତ ।

ଶିଷ୍ୟ । ତେଣୁ ଅବଶ୍ୟ ଆମ୍ଭେ ମନୋଯୋଗ କରିବା ଯେହେତୁ କି ପ୍ରକାରେ ଆକାଶ ମଣ୍ଡଳଗଣ ଆପଣା ସ୍ଥାନରେ ଥାଇ ଭ୍ରମଣ

କରୁଅଛନ୍ତି ଅଉ ପୃଥିବୀ ସୂର୍ଯ୍ୟକୁ ବୁଲୁଛି ଅମ୍ଭେମାନେ କିନିମନ୍ତେ ପୃଥିବୀରୁ ଖସି ନ ପଡୁଥାଉ ଏହାର ବିଷୟରେ ଆମ୍ଭର ବଡ ସନ୍ଦେହ ହୁଅଇ ।

ଗୁରୁ । ଭଲ ମନୋଯୋଗ କର ଏଗେ ଆମ୍ବଫଳ ଯେତେବେଳେ ତେମ୍ଫରୁ ଛିଡେ ତେତେବେଳେ କିନିମନ୍ତେ ଭୂମିରେ ପଡଇ ଏହା ବିବେଚନା କରି କହ ।

ଶିଷ୍ୟ । ତାହାକୁ କିଛି ଆଧାର ନ ଥିଲେ ସେ ଅବଶ୍ୟ ପଡିବ ।

ଗୁରୁ । କି ହେତୁରୁ ଅବଶ୍ୟ ପଡିବ ଫଳ କି ସଜୀବ କିଅବା ନିର୍ଜୀବ ବସ୍ତୁ ?

ଶିଷ୍ୟ । ଫଳତ ନିର୍ଜୀବ ବସ୍ତୁ ।

ଗୁରୁ । ଭଲ ନିର୍ଜୀବ ବସ୍ତୁ ଆପେ ଚଳିବାକୁ ନ ପାରଇ ଏଣୁ ଅଉ କୌଣସି ଭିନ୍ନ ବସ୍ତୁର ବଳରେ ଚଳଇ । ନୋହିଲେ ତେମ୍ଫ ଛିଣ୍ଡା ହେଲେହେଁ ସେଠାରେ ସବୁବେଳେ ରହଇ ।

ଶିଷ୍ୟ । ଏ କଥା ସତ୍ୟ ପୁଣି ସମସ୍ତ ବସ୍ତୁ ସେ ଫଳ ପରି ଭୂମି-ରେ ପଡଇ । ଅମ୍ଭେ ଗୋଟାଏ ପଥର ଯେବେ ଉପରକୁ ଫୋ-ପାଡି ଦେବା ତେବେ ସେ ବେଗେ ଫେରି ତଳକୁ ପଡିବ ।

ଗୁରୁ । ଏହି ନିମନ୍ତେ ଏହି ସବ ବସ୍ତୁ ପଡିବାର ଗୁଣର କାରଣ ଅବଶ୍ୟ ଥିବାର ଅଛି ।

ଶିଷ୍ୟ । ବସ୍ତୁମାନ ଭୂମିରେ ସବୁବେଳେ ପଡଇ ପୁଣି ଉପରକୁରେ ଅହିଉ ଦୂର ନ ଯାଏ ଏହାର କାରଣ କି ?

ଗୁରୁ । ଜଗତର ଏମନ୍ତ ସବୁ ବସ୍ତୁରେ ସର୍ବବ୍ୟାପୀ ଏକ ଗୁଣ ଅଛି ଯେ ବସ୍ତୁର ପ୍ରତ୍ୟେକ କଣା କି ପରମାଣୁ ଅପଣା କତିକି ଆନ ସବୁ କଣା ଅର୍ଥାତ୍ ପରମାଣୁ ଆକର୍ଷଣ କରଇ ଅର୍ଥାତ୍ ତାହାର ଯେତେ ଭାରି, ଯେତେ ନିକଟ ସେ ଅନୁସାରେ ଆକର୍ଷଣ କରଇ । ଏଥିନିମନ୍ତେ ଏହି ଭୂଗୋଳ ଏତେ ଅତ୍ୟନ୍ତ ବଡ ବସ୍ତୁ ଯେ ତାହାର

ତୁଲ୍ୟ ଆଉ କୌଣସି ନିକଟ ବସ୍ତୁ ନାହିଁ ଏଣୁ ପୃଥିବୀ ଆଉ ସମସ୍ତ ବସ୍ତୁ ଆପଣା କଡକୁ ଟାଣୁଅଛି । ଏହାକୁ ପୃଥିବୀର ଆକର୍ଷଣ ଶକ୍ତି ବୋଲି ।

ଶିଷ୍ୟ । ଏ କେମନ୍ତ ଆଶ୍ଚର୍ଯ୍ୟ ଗୁଣ ! ଏଥିପାଇଁ ଆକାଶକୁ ଖଣ୍ଡେ ପଥର ଫୋପାଡ଼ି ଦେଲେ ତାହା କେଉଁଠି ଆସି ପଡୁଅଛି ।

ଗୁରୁ । ହଁ, ଯେହେତୁ ଯେଉଁ ବଳ ଦ୍ୱାରା ତାହା ଆକାଶକୁ ଫିଙ୍ଗାଇ ସେହି ବଳ ପୃଥିବୀର ଆକର୍ଷଣ ଗୁଣରେ କ୍ରମଶଃ ପରାସ୍ତ ହୋଇ ତାହା ଭୂମିରେ ପଡ଼ି ଯାଏ । ଆଉ ଏ ସକାଶୁଁ କୌଣସି ବସ୍ତୁକୁ ଭୂମିରୁ ଉଠାଇଲେ ସେ ବସ୍ତୁ ଭାରି ବୋଧ ହୁଅଇ ଯେହେତୁ ତାହାର କଠିଣତା, ପରମାଣ ଅନୁସାରେ ପୃଥିବୀ ତାହାକୁ ଟାଣୁଅଛି । ଆଉ ଏହି ଆକର୍ଷଣ ଗୁଣ ସକାଶୁଁ ଲୋକ ସମସ୍ତେ, ପଶୁ, ଘର ଇତ୍ୟାଦି ସବୁ ବସ୍ତୁମାନ ଭୂଗୋଳର ମୁଖରୁ ଖସି ନ ପଡନ୍ତି ଯେହେତୁ ଜଗତର ସବୁ ବସ୍ତୁ ଏହି ସର୍ବବ୍ୟାପୀ ମହାକର୍ଷଣ ଗୁଣରେ ପୃଥିବୀର ମଧ୍ୟଭାଗକୁ ଆକର୍ଷିତ ଅଛି ।

ଶିଷ୍ୟ । ଭଲ ଅନୁଧାନ । କିମନ୍ତେ ବଡ଼ସାନ ବସ୍ତୁକୁ ଟାଣୁଅଛି ତାହା ବୁଝିବାକୁ ପାରନ୍ତି ପୁଣି ସଳଖ ବାଟରେ ନ ଚଳି ଏହି ସବୁ ଆକାଶମଣ୍ଡଳ କି ହେତୁରୁ ଏକକୁ ଆରେକ ଘେରୁଅଛି ?

ଗୁରୁ । ସବୁ ବସ୍ତୁମାନ ଗମନ ଶକ୍ତି ରହିତ ଏଣୁ ଆପଣାରୁ ଭିନ୍ନ କୌଣସି ବଳରେ ନ ଚଳାଇଲେ ତାହା ସଦାବେଳେ ଅଚଳ ପଡ଼ି ଥାଏ ପୁଣି ଆନର ବଳରେ ଗମନ କରାଗଲେ ତାହାର ଦୁଇ ଭିନ୍ନ ପ୍ରକାର ଗୁଣ ଜନ୍ମଇ । ସେ ଦୁଇ ଗୁଣର ନାମ ମଧ୍ୟାକର୍ଷଣ, ମଧ୍ୟରୁ ଛଡ଼ାଣ ବୋଲଇ ଅର୍ଥାତ୍ ମଧ୍ୟକୁ ଟାଣିବାର ପୁଣି ମଧ୍ୟରୁ ଦୂର କରିବାର ଶକ୍ତି । ଆକର୍ଷଣର ବିଷୟରେ କହିଲୁଁ ଏନିମନ୍ତେ ଛଡ଼ାଇବାର ଗୁଣ ବିଷୟରେ କିଛି କହିବାକୁ ହୁଅଇ ।

ଶିଷ୍ୟ । ଏହି ଦୁଇ ବଳ ଯେବେ ଏକ ସମାନ ଅର୍ଥାତ୍ ଏକ

ବଳ ଏ ଅତେ ଆନ ଶକ୍ତି ସେ ଅତେ ଆକର୍ଷଣ ହୁଅଇ ତେବେ କୌଣସି ବସ୍ତୁ କେବେହେଁ କକ୍ଷ ଚାଲଇ ନାହିଁ ଏହା ଆମ୍ଭେ ବୋଧ କରୁ ।

ଗୁରୁ । ଯେବେ ତେମନ୍ତ ଠିକ ବିପରୀତ ବଳ କରଇ ତେବେ ଏମନ୍ତ ହୁଅଇ ପ୍ରମାଣ ପୁଣି ସେ ଦୁଇ ପ୍ରକାର ବଳ ତେମନ୍ତ ନ ଲାଗଇ ବଙ୍କା ଧାରରେ ଲାଗଇ ଏଣୁ ଗ୍ରହାଦି କୌଣସି ବସ୍ତୁକୁ ଆଗରେ ଚଳାନ୍ତେ ତାହା ବୁଲି ବୁଲି ଚକ୍ର ପଥରେ ଚାଲୁଅଛି । ତାହାର ଉଦାହରଣ ଏମନ୍ତ ସହଜରୂପେ ହୁଅଇ । ଖଣ୍ଡେ ପଥରକୁ ଦଉଡରେ ବାନ୍ଧି ମୁଣ୍ଡରେ ବୁଲାଇ ଦେଲେ ସେ ଦଉଡ ହାତରେ ଧର ମଧ୍ୟାକର୍ଷଣର ନିଦର୍ଶନ ଜାଣିବ ପୁଣି ଯେ ବଳରେ ପଥର ବୁଲା ଯାଏ ତାହାକୁ ମଧ୍ୟଚ୍ଛଡାନ ଗୁଣ ଜାଣିବ ଆଉ ମୁଣ୍ଡକୁ ଆକର୍ଷଣ ଗୁଣର ମଧ୍ୟସ୍ଥଳ ଜାଣିବ । ଏମନ୍ତେ ସେ ଦୁଇ ପ୍ରକାର ବଳ ଲାଗିବାରୁ ଆକାଶମଣ୍ଡଳ ସମସ୍ତ ସୂର୍ଯ୍ୟକୁ ବୁଲଇ ଆଉ ଯେମନ୍ତ ମଧ୍ୟାକର୍ଷଣ ଗୁଣ ଆପଣା ମଧ୍ୟସ୍ଥଳକୁ ସମସ୍ତ ବସ୍ତୁକୁ ଟାଣଇ ତେମନ୍ତ ସେ ବସ୍ତୁ ଚାଲି ୨ ବୁଲଇ । ଯେମନ୍ତ ଶଗଡ ଚକ ଅଖରେ ବୁଲି ୨ ଅଗ୍ରସର ହୁଅଇ ଅବା ବାଣ୍ଟୁ ଆଦି କୌଣସି ଗୋଲାକାର ବସ୍ତୁ ଭୂମିରେ ପଡ ବୁଲି ୨ ଚଳଇ ତେମନ୍ତ ସୂର୍ଯ୍ୟ ମଧ୍ୟସ୍ଥଳ ହୋଇବାରୁ ଗ୍ରହାଦି ସବୁ ତାକୁ ବୁଲି ଚାଲନ୍ତି ।

ଶିଷ୍ୟ । ହେ ଅବଧାନ, ଆପଣ ବଡ ଅନୁଗ୍ରହ କଲ ଏହି ଉପଦେଶରେ ଆମ୍ଭର ମନ ଶିକ୍ଷା ପାଇଅଛି ଆଉ ପୂର୍ବର ସମସ୍ତ ଆମ୍ଭର ଯେ ନାନା ଅଗମ୍ୟ କଥା ଥିଲା ଏତେଛବଳେ ସେ ସବୁ କଥା ସୁଗୋଚର ହେଲା ।

ଗୁରୁ । ବସ୍ତୁର ଆକର୍ଷଣ, ଛଡାଣ ଏ ଦୁଇ ଗୁଣର ବିଧି ସୁଗୋଚର ହେଲେ ସୂର୍ଯ୍ୟ କେମନ୍ତ ଅଧିକ ବଡ ବସ୍ତୁ ହେବାରୁ ଭୂଗୋଳାଦି ସବୁ ଆକାଶମଣ୍ଡଳକୁ ଆକର୍ଷଣ କରଇ ଆଉ ସବୁ ବସ୍ତୁ ପରମାଣ,

ଦୂରସ୍ଥ ଅନୁସାରେ ଆନ ସବୁ ବସ୍ତୁକୁ କେମନ୍ତ ଆକର୍ଷଣ କରଇ ଏହ ସୁବୋଧ ଗମ୍ୟ ହୁଅଇ । ସେପରି ଚନ୍ଦ୍ରଠାରୁ ଭୂଗୋଳ ବଡ ହୋଇ ତାହାକୁ ଆକର୍ଷଣ କରଇ ଆଉ ମନୁଷ୍ୟ, ଗୃହ, ବୃକ୍ଷାଦଠାରୁ ପୃଥିବୀ ବଡ ହୋଇ ସମସ୍ତ ବସ୍ତୁକୁ ଟାଣି ଧରଇ । ସେହ ପ୍ରକାର ମଧ୍ୟତ୍ୟାଗ ଗୁଣ ଯେବେ ଚନ୍ଦ୍ରକୁ ନ ଲାଗନ୍ତା ତେବେ ପୃଥିବୀର ଉପରେ ତାହାର ଠଣା ହୁଅନ୍ତ ଆଉ ସୂର୍ଯ୍ୟଠାରୁ ପୃଥିବୀ ଗ୍ରହାଦ ସବୁ ଆକର୍ଷିତ ହୁଅନ୍ତ । ପୁଣି ମଧ୍ୟାକର୍ଷଣ, ମଧ୍ୟତ୍ୟାଗ ଏହ ଦୁଇ ଗୁଣ ସକାଶୁଁ ସେମାନେ ସମସ୍ତେ ଆପଣା ୨ ଚକ୍ରପଥରେ ଥାଇ ଭ୍ରମଣ କରନ୍ତି ।

---

## ଆକାଶ, ତାରାଗଣ ବିଷୟ ।

ଶିଷ୍ୟ । ଆକାଶମଣ୍ଡଳର ମଧ୍ୟରେ କେଉଁ ବିଷୟରେ ଆଦରେ ଜ୍ଞାତ ହେବାର ଉଚିତ ?

ଗୁରୁ । ଅସୀମ ଆକାଶର ଅତଡ ଅକ୍ଷିଠାଅ ତହିଁରେ ବିଦ୍ୟମାନ ଯେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ଧୂମକେତୁ, ତାରାଗଣ ଇତ୍ୟାଦର ବିଷୟରେ ଆଗେ ଶିଖିବାକୁ ଭଲ ।

ଶିଷ୍ୟ । ଆକାଶର ବିଶେଷ ଗୁଣ କି ?

ଗୁରୁ । ବିସ୍ତାରତା, ନିର୍ମଳତା ଆକାଶର ଏହ ଦୁଇ ପ୍ରଧାନ ଗୁଣ । ଯେହେତୁ ତାହାର ଏରୂପ ଦୀର୍ଘତା ନ ହେଲେ ଅସଂଖ୍ୟ ତାରାଗଣର ସ୍ଥାନ ତହିଁରେ ନ ହୁଅନ୍ତ । ଆଉ ଯେବେ ଏମନ୍ତ ନିର୍ମଳତା ତାହାର ନ ହୁଅନ୍ତା ତେବେ ତାରାଗଣକୁ ଆମ୍ଭେମାନେ ଦେଖିବାକୁ ନ ପାରନ୍ତାଇ ।

ଶିଷ୍ୟ । ଆକାଶ ନୀଳ ବର୍ଣ୍ଣ, ପୃଥିବୀ ସାଗୁଆ ଏହାର କାରଣ କି ?

ଗୁରୁ । ନୀଳ, ସାଗୁଆ ବର୍ଣ୍ଣ ଦର୍ଶନେ ପ୍ରାଣିମାନଙ୍କର ଅକ୍ଷି ସୁତୃଣ ହୋଇ, ଆନନ୍ଦ ଜନ୍ମଇ ପୁଣି କୌଣସି କ୍ଷତ ନ ହୁଅଇ । ଏହହେତୁ

ପରମେଶ୍ୱର ପ୍ରାଣିବର୍ଗର ପ୍ରତି ଦୟା କରି ଏହି ଦୁଇ ବସ୍ତୁ ଦେଇ-ଅଛନ୍ତି ।

ଶିଷ୍ୟ । ଆକାଶମଣ୍ଡଳ ସମସ୍ତ କେମନ୍ତ କରି ଏତେ ତେଜସ୍କର ହୁଅଇ ?

ଗୁରୁ । ପୃଥିବୀ ଅବଧି ତେଜ, ଆଲୁଅବାତା ସୂର୍ଯ୍ୟ ଅଟଇ ଗ୍ରହଗଣ ସମସ୍ତ ପୃଥିବୀର ତୁଲ୍ୟ ନିଜରେ ତେଜହୀନ ପୁଣି ସୂର୍ଯ୍ୟର କିରଣ ଗ୍ରହଣ କରି ତେଜବନ୍ତ ହୁଅନ୍ତି ଏଣୁ ସେମାନଙ୍କର ନାମ ଗ୍ରହ । ସେ ପ୍ରକାରେ ଦିନଦେଖିଲେ ଚନ୍ଦ୍ର ଅମ୍ଭମାନଙ୍କର ଭୂଗୋଳରୁ ତେଜ ପାଏ । ଏମାନ ଛଡ଼ି ଅଚଳ ତାରା ସମସ୍ତଙ୍କୁ ପଣ୍ଡିତମାନେ ସୂର୍ଯ୍ୟ ବୋଧ କରନ୍ତି ପୁଣି ଯେମନ୍ତ ଅମ୍ଭମାନଙ୍କର ସୂର୍ଯ୍ୟ ଗ୍ରହାଦିଙ୍କୁ ଆଲୁଅ ପ୍ରଦାନ କରଇ ତେମନ୍ତେ ପ୍ରତ୍ୟେକ ଅଚଳ ତାରା ସୂର୍ଯ୍ୟ ହୋଇ ଅଶେଷ ଅଦୃଶ୍ୟ ଗ୍ରହାଦିକୁ ତେଜସ୍କର କରନ୍ତି ।

ଶିଷ୍ୟ । ଏହି ଅତି ଆଶ୍ଚର୍ଯ୍ୟ ! ଗ୍ରହ ଅଚଳ ତାରା କି ପ୍ରକାରେ ଚିହ୍ନା ଯାଏ ?

ଗୁରୁ । ସେ ତାରାମାନେ ସବୁବେଳେ ଏକ ସ୍ଥାନରେ ରହନ୍ତି, ମିଟିମିଟି ଆଲୁଅ ଦିଅନ୍ତି ପୁଣି ଗ୍ରହଗଣ ସବୁ ଭ୍ରମଣକାରୀ ହୋଇ ସ୍ଥିର ଆଲୁଅ ଦିଅନ୍ତି ।

ଶିଷ୍ୟ । ଅଚଳ ତାରା ଯେବେ ଏମନ୍ତ ବଡ ତେବେ କିପାଁଇ ଏତେ ସାନ ଦେଖା ହୁଅଇ ?

ଗୁରୁ । ସେମାନେ ଅତ୍ୟନ୍ତ ଦୂରସ୍ଥ ହେତୁରୁ । ପଣ୍ଡିତମାନେ ଗଣନା କରନ୍ତି ଯେ ସବୁରୁ ନିକଟ ଯେଉଁ ତାରା ସେ ତାରାରୁ ଯେବେ ତୋପରୁ ଗୁଳି ଛଡା ଯାଏ ସେ ଗୁଳି ଯେବେ ଏକ ଦଣ୍ଡରେ ୪୫୬ କୋଶ ଗମନ କରଇ ତେବେ ତାରାକୁ ଛାଡିବା ଦିନରୁ ପୃଥିବୀକି ଆସିବା ପର୍ଯ୍ୟନ୍ତେ ୭୬୦ ହଜାର ବରଷ ହେବ ।

ଶିଷ୍ୟ । ଅଚଳ ତାରା କେମନ୍ତେ ଚଞ୍ଚଳ ଆଲୁଅ ଦିଅଇ ?

ଗୁରୁ । ସେମାନେ ଅତି ଦୂର ହେବାରୁଁ ଆଉ ଆକାଶରେ ଅନେକ ଭାଷ୍ପ ଇତ୍ୟାଦ ସୂକ୍ଷ୍ମ ବସ୍ତୁ ଥାଏ୍ ଏକାରଣ ଏମତ ଦେଖା ହୁଅଇ ।

ଶିଷ୍ୟ । ଆକାଶମଣ୍ଡଳରେ ଏପ୍ରକାର ତାରା କେତେ ଥିବ?

ଗୁରୁ । ସାମାନ୍ୟ ଦୃଷ୍ଟିରେ କେବେ୬ ଏକ ହଜାର ଗଣନା କରିବାକୁ ପାର ପୁଣି ଉତ୍ତମ ନଳଜନଳିରେ ଦେଖିଲେ ଆଉ ଅନେକ ଦେଖା ଯାଏ୍ ଏଣୁ କେତେ ସଂଖ୍ୟକ ଅଛି ତାହାର ନିଶ୍ଚୟ ନାହିଁ ।

ଶିଷ୍ୟ । ତାରାଗଣ ଶ୍ରେଣୀବନ୍ଧରୂପରେ ଦୃଷ୍ଟ ନ ହୁଅଇ କପାଁଇ?

ଗୁରୁ । ଆମ୍ଭେମାନେ ଈଶ୍ୱରଙ୍କ ସବୃ ସୃଷ୍ଟିର ମଧ୍ୟରେ ଥାଇ ନ ଦେଖି ବକ୍ରରୂପରେ ଦେଖି ଏକାରଣ ଛିନ୍ନଭିନ୍ନ ଦୃଷ୍ଟ ହୁଅଇ ପୁଣି ସେମାନେ ସୁନ୍ଦରରୂପ ଶ୍ରେଣୀବନ ଅଟନ୍ତି ଏଥିରେ କିଛି ସନ୍ଦେହ ନ ହୁଅଇ ।

ଶିଷ୍ୟ । ଏକ ତାରାରୁ ଆନ ତାରା କରୂପରେ ଚିହ୍ନା ହୁଅଇ?

ଗୁରୁ । ପରିମାଣେ ସ୍ଥାନାନୁସାରେ । ତାରାଗଣ ସବୁ ଦୃଷ୍ଟ ପରି-ମାଣାନୁସାରେ ଛ ବର୍ଗରେ ବିଭିନ୍ନ କରାଯାଏ୍ । ସମସ୍ତରୁ ବଡ ପ୍ରଥମ ବର୍ଗୀୟ ତାରା ବୋଲନ୍ତି ଆଉ ସାମାନ୍ୟ ଦୃଷ୍ଟିରେ ଯେ ସମସ୍ତରୁ ସାନ ଦେଖା ହୁଅଇ ସେ ସବୁ ଛ ବର୍ଗୀୟ ତାରା ବୋଲନ୍ତି । ଏହା ଛଡ଼ ନଳଜନଳିରେ ନ ଦେଖିଲେ ଯେ ସବୁ ତାରାର ଦୃଷ୍ଟି ନ ହୁଅଇ ସେ ସବୁଙ୍କୁ ଦୂରବୀଣ ଦୃଶ୍ୟ ତାରା ବୋଲି ।

ଶିଷ୍ୟ । ତାରାଗଣ ସ୍ଥାନେ୬ ପୁଞ୍ଜି୬ ହୁଅଇ ସେହ ଅନୁସାରେ ଗୋଟାଏ୍ ଗୋଟାଏ୍ ନାମ ପାଏ୍ କ ନାହିଁ?

ଗୁରୁ । ଜ୍ୟୋତିର୍ବେତ୍ତାମାନେ ଆକାଶମଣ୍ଡଳକୁ ତନି ଭାଗରେ ବିଭକ୍ତ କରନ୍ତି । ପ୍ରଥମ ଭାଗ ରାଶିଚକ୍ର, ଦ୍ୱିତୀୟ ଉତ୍ତର ଅକ୍ଷାଂଶ, ତୃତୀୟ ଦକ୍ଷିଣ ଅକ୍ଷାଂଶ । ଏହ ତନି ଭାଗରେ ପ୍ରାୟ ସମସ୍ତ ତାରା

ପୁଞ୍ଜି ହୁଅଇ ମନୁଷ୍ୟ, ପଶୁ, ମୁକୁଟ, ଶୂଳ ଇତ୍ୟାଦି କୌଣସି ଆକୃତି କଳ୍ପନା କରି ସେ କଳ୍ପିତ ରୂପ ଅନୁସାରେ ପୁଞ୍ଜି ନକ୍ଷତ୍ରକୁ ନାମ ଦିଅନ୍ତି । ଇଉରୋପୀୟ ପଣ୍ଡିତମାନେ ପ୍ରାୟ ଏକ ଶତେ ନକ୍ଷତ୍ର ଗଣନା କରନ୍ତି । ହିନ୍ଦୁ ପଣ୍ଡିତମାନେ ରାଶିଚକ୍ରରେ ସତାଇଶ ନକ୍ଷତ୍ର ଗଣନା କରନ୍ତି ସେମାନେ ଏହି । ୧ ଅଶ୍ୱିନୀ । ୨ ଭରଣୀ । ୩ କୃତ୍ତିକା । ୪ ରୋହିଣୀ । ୫ ମୃଗଶିରା । ୬ ଆର୍ଦ୍ରା । ୭ ପୁନର୍ବସୁ । ୮ ପୁଷ୍ୟା । ୯ ଅଶ୍ଳେଷା । ୧୦ ମଘା । ୧୧ ପୂର୍ବ ଫାଲ୍‌ଗୁନୀ । ୧୨ ଉତ୍ତର ଫାଲ୍‌ଗୁନୀ । ୧୩ ହସ୍ତା । ୧୪ ଚିତ୍ରା । ୧୫ ସ୍ୱାତି । ୧୬ ବିଶାଖା । ୧୭ ଅନୁରାଧା । ୧୮ ଜ୍ୟେଷ୍ଠା । ୧୯ ମୂଳା । ୨୦ ପୂର୍ବାଷାଢା । ୨୧ ଉତ୍ତରାଷାଢା, ଅଭିଜିତ । ୨୨ ଶ୍ରବଣା । ୨୩ ଧନିଷ୍ଠା । ୨୪ ଶତଭିଷା । ୨୫ ପୂର୍ବ ଭାଦ୍ରପଦ । ୨୬ ଉତ୍ତର ଭାଦ୍ରପଦ । ୨୭ ରେବତୀ ।

ଶିଷ୍ୟ । ତାରାଗଣରୁ ଆମ୍ଭମାନଙ୍କର କି ଫଳ ?

ଗୁରୁ । ଅନେକ ଫଳ ପାଇ । ଯେହେତୁ ତାରାଗଣରୁ ରଶ୍ମିଯୋଗୁ ଅଦ୍ଭୁତ ଦୀପ୍ତି ଜଣା ଯାଏ । ସେମାନଙ୍କରେ ଅନ୍ଧକାର ନଷ୍ଟ ହୁଅଇ । ପୁଣି ତାହାଙ୍କ ଲୋକଙ୍କର ବଡ ଉପକାର ହୁଅଇ । ଅଧିକ ଧ୍ରୁବ ନାମେ ଏକ ତାରାରୁ ସର୍ବଦା ଉପକାର ହୁଅଇ ଯେହେତୁ ସେହି ତାରା ସମସ୍ତର ମଧ୍ୟରେ ସବୁବେଳେ ଏକ ସ୍ଥାନେ ଉଦୟ ହୁଅଇ ।

---

## ଆକାଶମଣ୍ଡଳର ଚଳତ୍ୱର ପ୍ରମାଣ ।

ଶିଷ୍ୟ । ଆକାଶ ମଣ୍ଡଳଗଣ ଯେ ଚଳନ୍ତି ଏଥିରେ କି ସହଜ ପ୍ରମାଣ ହୁଅଇ ?

ଗୁରୁ । ନିତ୍ୟ ସୂର୍ଯ୍ୟ, ଚନ୍ଦ୍ର, ତାରାଗଣ ପୂର୍ବ ଦିଗରେ ଉଦୟ ହୋଇ କ୍ରମଶଃ ପଶ୍ଚିମରେ ଅସ୍ତଗତ ହୁଅଇ ଏହି ଏକ ସହଜ ପ୍ରମାଣ

ଜାଣିବ । ତୁମ୍ଭେ ଯେବେ ବିବେକ ହୋଇ ଦେଖିବ ତେବେ ସହଜରୂପେ ଦେଖିବାକୁ ପାଇବ ଯେ ବରଷର ସବୁ ଦିନରେ ସୂର୍ଯ୍ୟ ଅଥବା ଚନ୍ଦ୍ର ଠିକ ଏକ ସ୍ଥାନରେ ଉଦୟ ନ ହୁଅନ୍ତି ପୁଣି ଆକାଶରେ ଏକ ଉଚ୍ଚ ପର୍ଯ୍ୟନ୍ତେ ନ ଉଠନ୍ତି । ମାଘ ମାସଠାରୁ ଆଷାଢ ମାସ ପର୍ଯ୍ୟନ୍ତେ ଦିନକୁଦିନ ଅଂଶକ୍ରମେ ଉତ୍ତର ଆଡେ ସୂର୍ଯ୍ୟ ଉଦୟ ହୁଅଇ ଆଉ ଆକାଶରେ ଅଧିକ ସମୟ ଥାନ୍ତି ପୁଣି ଆଷାଢ ମାସରେ ଆମ୍ଭମାନଙ୍କର ମୁଣ୍ଡର ଉପରେ ଠିକ ହୁଅଇ ତହିଁଉତ୍ତାରେ ପୌଷ ମାସ ପର୍ଯ୍ୟନ୍ତେ ଅଂଶକ୍ରମେ ଫେରି ଯାଇ ଆକାଶରେ ଦିନକୁଦିନ କ୍ରମେ୨ ଅଳ୍ପ ସମୟ ଥାଏ ତାହାର କିରଣ ଅହରହ ବକ୍ରଭାବରେ ପଡଇ ।

ଶିଷ୍ୟ । ଚନ୍ଦ୍ର ଚଳିବାର ବିଷୟ କି ଦେଖା ହୁଅଇ ?

ଗୁରୁ । ନୂଆ ଚନ୍ଦ୍ର ଅଧିକର ପଶ୍ଚିମ ଦିଗରେ ଅସ୍ତ ଯିବାର ସୂର୍ଯ୍ୟର ନିକଟରେ ଦେଖା ଯାଏ । ତହିଁଉତ୍ତାରେ ରାତିକୁରାତି କ୍ରମଶେ ବଢି ଅସ୍ତ ଯିବାର ସୂର୍ଯ୍ୟରୁ ଅନ୍ତର ହୁଅଇ । ଶେଷରେ ପୂର୍ଣ୍ଣ ଚନ୍ଦ୍ର ହୋଇ ସୂର୍ଯ୍ୟ ଅସ୍ତ ଯିବାରବେଳରେ ପୂର୍ବ ଦିଗରେ ଦେଖା ଯାଏ ।

ଶିଷ୍ୟ । ତାରାଗଣ କି ଏମନ୍ତ ସ୍ଥାନାନ୍ତର ଦେଖା ହୁଅଇ ?

ଗୁରୁ । ହିଁ ନିର୍ମଳ ସନ୍ଧ୍ୟାବେଳେ ଯେବେ ସ୍ଥିର ଦୃଷ୍ଟିରେ ତାରାଗଣକୁ ଦେଖ ତେବେ କ୍ରମେ୨ ନୂଆ ତାରା ପୂର୍ବ ଦିଗରେ ଉଦୟ ହୋଇ ପଶ୍ଚିମରେ ଆଉ ତାରା ଲୁପ୍ତ ହେବାର ଦେଖିବ । ଅଉ ଯୋ ତାରାକୁ ଉଦୟବେଳେ ପୂର୍ବରେ ଦେଖିଲ ସେ ସବୁ କ୍ରମେ ପଶ୍ଚିମଆଡେ ଯାଇ ଶେଷରେ ଅସ୍ତ ହୁଅଇ ।

ଶିଷ୍ୟ । ସବୁ ତାରାଗଣ କି ପୂର୍ବରେ ଉଦୟ ପଶ୍ଚିମ ଅସ୍ତ ହୁଅଇ ?

ଗୁରୁ । ନା ଉତ୍ତର ଦିଗରେ ଦେଖିଲେ କେହି୨ ତାରା କେ-

ବେହେଁ ଅସ୍ତ ନ ଯାଇ । ଧ୍ରୁବ ତାରା ବୋଲି ଯେ ତାରା ତାହାଙ୍କୁ ଚବିଶ ଘଣ୍ଟାରେ ଭ୍ରମଣ କରନ୍ତି ।

ଶିଷ୍ୟ । କିନିମନ୍ତେ ସୂର୍ଯ୍ୟ ଗ୍ରହାଦି ପୃଥିବୀକୁ ବୁଲଇ ବୋଲି ବୋଧ ହୁଅଇ ?

ଗୁରୁ । ଦିନକୁଦିନ ପୃଥିବୀ ଅପଣା ଅକ୍ଷରେ ବୁଲିବା ସକାଶୁ ପୃଥିବୀ ପଶ୍ଚିମରୁ ପୂର୍ବ ଅଡେ ବୁଲଇ ଏଣୁକରି ଆକାଶମଣ୍ଡଳ ପୂର୍ବରୁ ପଶ୍ଚିମ ଅଡେ ବୁଲିବାକୁ ଦେଖା ଯାଏ ।

ଶିଷ୍ୟ । ତଥାପି ପୃଥିବୀ ଯେ ନିଶ୍ଚଳ ପୁଣି ଆକାଶ ମଣ୍ଡଳଗଣ ଭ୍ରମଣ କରନ୍ତି ଏହି କଥା ମନରୁ ଦୂର କରିବାର ଅତି ଅସହଜ ପ୍ରାୟ ସମସ୍ତେ ଏକଥା ମାନନ୍ତି ।

ଗୁରୁ । ଏହି କଥା ସତ୍ୟ ତେବେହେଁ ପ୍ରମାଣ ଦୃଢ ଅଟଇ । ଗ୍ରହଗଣ ସୂର୍ଯ୍ୟକୁ ଘେରନ୍ତି ଏହା ଖାଲି ଆକ୍ଷିରେ ଦେଖିବାକୁ ପାଇ ସେ ପ୍ରକାରେ ଚନ୍ଦ୍ର ନିତି ସ୍ଥାନାନ୍ତର ହୁଅଇ ଏହା ଦେଖୁ ଥାଇ ଏଥିପାଇଁ ମନର ଭ୍ରମ ଛଡାଇବାର ନିମନ୍ତେ ଏହି ସୁସ୍ପଷ୍ଟ ପ୍ରମାଣ ହୁଅଇ । ଆନ ଗ୍ରହଗଣ ଯେବେ ବୁଲନ୍ତି ତେବେ ପୃଥିବୀ ସେମା-ନଙ୍କର ତୁଲ୍ୟ ଏକ ଗ୍ରହ ହୋଇ ସେମାନଙ୍କର ମତେ କି ହେତୁରୁ ନ ବୁଲଇ ?

ଆଉ ଭୂଗୋଳ ଯେବେ ସୂର୍ଯ୍ୟର ସହିତ ତୁଲଣା ଦେବା ତେବେ ବଡ ବୋଇତକଖାରୁ ପାଖରେ ଯେମନ୍ତ ଏକ ସୋରିଷ ବୀଜ ତେମନ୍ତ ସୂର୍ଯ୍ୟ ପାଖରେ ଭୂଗୋଳ । ଆଉ ଗ୍ରହଗଣ ମଧ୍ୟରେ କେହି ଗ୍ରହ ଭୂଗୋଳରୁ ଅତି ବଡ । ଏଣୁ ଏହି ବଡ ସୂର୍ଯ୍ୟ ଗ୍ରହାଦି ଏହି ସାନ ପୃଥିବୀକୁ ବୁଲନ୍ତି ଅବା ଏହି ପୃଥିବୀ ଆଦି ସୂର୍ଯ୍ୟକୁ ବୁଲନ୍ତି ଏହାର ମଧ୍ୟରେ କି କର୍ତ୍ତବ୍ୟ ତାହା ବିବେଚନା କର ।

ଏକ ଉଦାହରଣ କହିବା ବିଚାର କର । ବଡ ପୁଷ୍କରିଣୀର ମଧ୍ୟ-ରେ ଖୋଟାଏ ମାଟିଆ ଥାଏ ସେ ମାଟିଆ ଉପରେ ଗୋଟିଏ

ପିମ୍ପୁଡ଼ି ବସଇ । ପବନ ବହିବାରୁ ସେ ମାଠିଆ ବେଗ୨ ବୁଲିଲେ ଯେବେ ସେ ପିମ୍ପୁଡ଼ି ବୋଲଇ ଅହୋ ଗଛ, ଘର, ପଶୁ, ମନୁଷ୍ୟ, ଆକାଶ, ସୂର୍ଯ୍ୟାଦି କେମନ୍ତ ଆମ୍ଭକୁ ଘେରନ୍ତି ତେବେ କି ସେ ପିମ୍ପୁଡ଼ିକୁ ଅତି ଅବୋଧ ନ ବୋଲିବା? ଅବଶ୍ୟ ବୋଲିବା । ଯେ ପ୍ରକାରେ ଭୂଗୋଳ ଘୁରିବାର ସକାଶୁଁ ସୂର୍ଯ୍ୟ ଗ୍ରହାଦି ଆମ୍ଭମାନଙ୍କର ସୋଲଷ ବୁଲିସ୍ୱରୂପ ପୃଥିବୀକୁ ଘେରନ୍ତି ଏହି କଥା ଜ୍ଞାନ କରିବାର ଆମ୍ଭମାନଙ୍କର ଅତି ଅସଙ୍ଗତ ବିଷୟ ।

ଶିଷ୍ୟ । ଭଲ ଅବଧାନ । ଆମ୍ଭେ ଦେଖିବାକୁ ପାଇ ଯେ ଇନ୍ଦ୍ରିୟ ଗୋଚର ସତ୍ୟ ବୋଲି ବିଶ୍ୱାସ କରିବାକୁ ଉଚିତ ନୋହେ ମନର ବିବେଚନା ମାନିବାକୁ ଉଚିତ ହୁଅଇ ।

---

## ସୂର୍ଯ୍ୟାଦି ଜଗତ ବିବରଣ ।

ଶିଷ୍ୟ । ସୂର୍ଯ୍ୟାଦି ଆକାଶମଣ୍ଡଳ ବିଷୟରେ ବିଶେଷ କରି କିଛି କହିବା ହେଉ ।

ଗୁରୁ । ସୂର୍ଯ୍ୟ ଆଉ ଗ୍ରହଗଣ ଧୂମକେତୁ ଯେ ଆକାଶମଣ୍ଡଳ ସୂର୍ଯ୍ୟକୁ ବୁଲନ୍ତି ସେ ସମସ୍ତଙ୍କୁ ସୂର୍ଯ୍ୟାଦି ଅବା ସୌର ଜଗତ ବୋଲି ଜାଣିବା ।

ଶିଷ୍ୟ । କେତେ ଗ୍ରହଗଣ ଅଛନ୍ତି?

ଗୁରୁ । ଗ୍ରହଗଣର ତିନି ବର୍ଗ ଅଛି । ପ୍ରଥମ ବର୍ଗରେ ସାତ ବଡ଼ ଗ୍ରହ ଅଛନ୍ତି । ଦ୍ୱିତୀୟ ବର୍ଗରେ ଚାରି ସାନ ଗ୍ରହ ଅଛନ୍ତି । ତୃତୀୟ ବର୍ଗରେ ଅଠର ସଙ୍ଗୀ ଗ୍ରହ ଅଛନ୍ତି ।

ଶିଷ୍ୟ । ବଡ଼ ଗ୍ରହଗଣେ କି୨ ଆଉ ବଡ଼ ଗ୍ରହ ନାମ କିମନ୍ତେ ଦିଆଗଲା?

ଗୁରୁ । ବଡ଼ ଗ୍ରହଗଣର ନାମ ଏହି ୧ ବୁଧ । ୨ ଶୁକ୍ର । ୩ ଭୂଗୋଳ । ୪ ମଙ୍ଗଳ । ୫ ବୃହସ୍ପତି । ୬ ଶନି । ୭ ହର୍ଷିଲ ।

ଏମାନଙ୍କୁ ବଡ ଗ୍ରହ ବୋଲ ଯେହେତୁ ସୂର୍ଯ୍ୟର ଆକର୍ଷଣ ମାତ୍ରରେ ସେମାନେ ସୂର୍ଯ୍ୟକୁ ବୁଲନ୍ତି ଆଉ ସେମାନେ ଅତି ବଡ ।

ଶିଷ୍ୟ । ଏହି ସମସ୍ତଙ୍କୁ କି ଆଖି ମାତ୍ରରେ ଦେଖା ହୁଅଇ ?

ଗୁରୁ । ନାହିଁ ସବୁ ଆଖି ମାତ୍ରରେ ଦେଖା ନ ହୁଅଇ । ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି, ଶନି ଏମାନଙ୍କୁ ଦେଖା ଯାଏ ପୁଣି ଦୂରବୀକ୍ଷଣରେ ନ ଅନାଇଲେ ହର୍ଶ୍ଚେଲର ଦେଖା ନ ହୁଅଇ ।

ଶିଷ୍ୟ । ସାନ ଗ୍ରହ କାହାକୁ ବୋଲି ?

ଗୁରୁ । ସାନ ଗ୍ରହ ବେସ୍ତ, ଜୁନୋ, ସୀରସ, ପାଲ୍ଲସ ଏମାନଙ୍କୁ ସାନ ଗ୍ରହ ବୋଲ ଯେହେତୁ ଏମାନେ ସେ ଗ୍ରହମାନଙ୍କଠାରୁ ଅତି କ୍ଷୁଦ୍ର । ଏହି ଚାରି ଗ୍ରହ ଉଣାଇଶି ପଚାଶ ବରଷ ମଧ୍ୟରେ ଦେଖା ହେଲା ।

ଶିଷ୍ୟ । ସଙ୍ଗୀ ଗ୍ରହ କାହାକୁ ବୋଲି ଆଉ ଏହି ନାମର ଅର୍ଥ କି ?

ଗୁରୁ । ସଙ୍ଗୀ ଗ୍ରହକୁ ସାମାନ୍ୟ ଭାଷାରେ ଚନ୍ଦ୍ର ବୋଲନ୍ତି । ସେମାନଙ୍କୁ ସଙ୍ଗୀ ଗ୍ରହ ବୋଲନ୍ତି ଯେହେତୁ ସେମାନେ ଆଉ କୌଣସି ଗ୍ରହକୁ ଅଧ୍ୟରେ ବୁଲନ୍ତି ପୁଣି ସେ ଗ୍ରହର ସଙ୍ଗରେ ସୂର୍ଯ୍ୟକୁ ଭ୍ରମଣ କରନ୍ତି ।

ଶିଷ୍ୟ । ଏହି ଅଠର ସଙ୍ଗୀ ଗ୍ରହ କି ବଡ ଗ୍ରହକୁ ଘେରନ୍ତି ?

ଗୁରୁ । ଆମ୍ଭମାନଙ୍କର ଗ୍ରହ ଅର୍ଥାତ୍ ପୃଥିବୀର ସଙ୍ଗରେ ଏକ । ବୃହସ୍ପତିର ଚାରି । ଶନିର ସଙ୍ଗରେ ସାତ । ହର୍ଶ୍ଚେଲଠାରେ ଛଅ ଅଛଇ ।

ଶିଷ୍ୟ । ଧୂମକେତୁ କିସ ?

ଗୁରୁ । ସେମାନେ ଲାଙ୍ଗୂଳଯୁକ୍ତ ଭ୍ରମଣକାରି ତାରା । ସେମାନେ ଅତ୍ୟନ୍ତ ବକ୍ରଗତିରେ ସୂର୍ଯ୍ୟକୁ ବୁଲନ୍ତି । ପୁଣି ସେମାନଙ୍କର ସଂଖ୍ୟା କେତେ ତାହା ଏପର୍ଯ୍ୟନ୍ତେ ନିଶ୍ଚୟ ନାହିଁ ।

## ସୂର୍ଯ୍ୟ ।

ଗୁରୁ । ଏମନ୍ତ ସଂକ୍ଷେପ କରି ସୌର ଜଗତର ନାନା ଅଂଶର ବିଷୟରେ କହିଲାଉ ଏତେବେଳେ ବିଶେଷ କରି କହିବାରି କର୍ତ୍ତବ୍ୟ । ଆଗେ ସୂର୍ଯ୍ୟର ବୃତ୍ତାନ୍ତ କହିବା ।

ଶିଷ୍ୟ । ସୂର୍ଯ୍ୟ ଅଚଳ କି ନାହିଁ ?

ଗୁରୁ । ଅନ୍ୟ ଗ୍ରହାଦିର ମଧ୍ୟସ୍ଥାନରେ ସୂର୍ଯ୍ୟ ସଦା ଥାଏ ତଥାପି ସେ ଆପଣା ଅକ୍ଷରେ ଅର୍ଥାତ୍ ମଧ୍ୟସ୍ଥଳରେ ପଚିଶ ଦିନର ମଧ୍ୟରେ ପଶ୍ଚିମ ଦିଗରୁ ପୂର୍ବ ଦିଗର ଆଡେ ବୁଲଇ ।

ଶିଷ୍ୟ । ସୂର୍ଯ୍ୟରଂ ପରିମାଣ କେତେ ?

ଗୁରୁ । ପୃଥ୍ୱୀରୁ ସୂର୍ଯ୍ୟ ଦଶ ଲକ୍ଷ ଗୁଣେ ବଡ ।

ଶିଷ୍ୟ । ପୃଥିବୀଠାରୁ ସୂର୍ଯ୍ୟ କେତେ ଦୂରେ ଥାଏ ?

ଗୁରୁ । ସେ ପଞ୍ଚାନବେ ନିୟୁତ କୋଶ ଛଡା ଅଛି ।

ଶିଷ୍ୟ । ଏ କେମନ୍ତ ଆଶ୍ଚର୍ଯ୍ୟ ! ଆଉ କିଛି ନିକଟ ହେଲେ କି ଆମ୍ଭମାନଙ୍କର ଅଧିକ ଭଲ ନ ହୁଅନ୍ତା ?

ଗୁରୁ । ଆମ୍ଭମାନଙ୍କର ସୃଷ୍ଟିକର୍ତ୍ତା ସଦ୍‌ବିବେଚକ ତାହାଙ୍କର ଭ୍ରାନ୍ତି ନାହିଁ ସେ ଉପଯୁକ୍ତ ସ୍ଥାନରେ ସୂର୍ଯ୍ୟକୁ ସ୍ଥାପନ କରିଅଛନ୍ତି । ତାହାର ଆଉ ନିକଟ ଯେବେ ହୁଅନ୍ତା ତେବେ ଆମ୍ଭେମାନେ ଦଗ୍ଧ ହୁଅନ୍ତାଇଁ । ଯେବେ ଅଧିକ ଦୂରରେ ହୁଅନ୍ତା ତେବେ ଆମ୍ଭେମାନେ ଶୀତରେ ମରନ୍ତାଇଁ ।

ଶିଷ୍ୟ । ସୂର୍ଯ୍ୟଠାରୁ କି ପୃଥିବୀ ସର୍ବଦା ଏକ ସମାନ ଦୂରେ ଥାଏ ?

ଗୁରୁ । ତାହା ନୋହେ ଯେହେତୁ ପୃଥିବୀ ଲମ୍ବାକାର ଚକ୍ରର ନ୍ୟାୟ ଗୋଲୁ ୬ ସୂର୍ଯ୍ୟ ବୁଲଇ । ସୂର୍ଯ୍ୟ ସର୍ବଦା ନିଶ୍ଚଳ ଏନିମନ୍ତେ ପୃଥିବୀ କୌଣସି ସମୟରେ ନିକଟ କୌଣସି ସମୟରେ ଦୂରେ ହୁଅଇ ।

ଶିଷ୍ୟ । ପୃଥିବୀ ସୂର୍ଯ୍ୟର ନିକଟେ କେଉଁ କାଳରେ ହୁଅଇ? ଗ୍ରୀଷ୍ମ କାଳରେ କି ଶୀତ କାଳରେ?

ଗୁରୁ । ଶୀତକାଳ ଅଷାଢ ମାସଠାରୁ ମାର୍ଗଶୀର ମାସ ଯାଏଁ ସେ ବଣ ଲକ୍ଷ ସାଢ଼େ ଶ ଚୌବନ ହଜାର କୋଶ ନିକଟ ହୁଅ ଇ

ଶିଷ୍ୟ । ଏ କି? ସେତିକିବେଳେ ଯେବେ ନିକଟ ହୋଏ ତେବେ ଏମନ୍ତ ଶୀତ ହୁଅଇ କିପାଇଁ?

ଗୁରୁ । କାରଣ ଏହି ଗ୍ରୀଷ୍ମ କାଳରେ ଆକାଶ ମଧ୍ୟରେ ସୂର୍ଯ୍ୟ ଅନେକ ବେଳ ଉଦୟ ଥାଏ ତହିଁରେ ପୃଥିବୀ ଅଧିକ ତାପଯୁକ୍ତ ହୁଅଇ ଏନିମନ୍ତେ ସେ କାଳରେ ଗ୍ରୀଷ୍ମ ବୋଧ ହୁଅଇ । ଶୀତ କାଳରେ ଅଳ୍ପବେଳ ସୂର୍ଯ୍ୟ ଉଦୟ ହୁଅଇ ତହିଁରେ ତାପ ଅଳ୍ପ ହେବାରୁ ଶୀତ ଅଧିକ ହୁଅଇ ।

ଶିଷ୍ୟ । ଆଲୁଅ ବିନୁ ସୂର୍ଯ୍ୟରୁ କି ଅମ୍ଭେମାନେ ଆଉ କିଛି ଫଳ ପାଉଥାଇ?

ଗୁରୁ । ହଁ ତାହାରୁ ଖରାରୁ ସମସ୍ତ ବୃକ୍ଷାଦି ବୃଦ୍ଧି ପାନ୍ତି ସମସ୍ତ ପ୍ରାଣିର ପୁଷ୍ଟି ହୁଅଇ ସମୁଦ୍ରଠାରୁ ଭାପ ଉଠଇ ସେହି ଭାପରେ ବୃଷ୍ଟି ହୁଅଇ ।

---

## ଗ୍ରହଗଣ ବିଷୟରେ ।

---

### ବୁଧ, ଶୁକ୍ର ।

ଶିଷ୍ୟ । କେଉଁ ଗ୍ରହ ସୂର୍ଯ୍ୟର ଅଧିକ ନିକଟ?

ଗୁରୁ । ଅଧିକ ନିକଟ ବୁଧ । ସେ ୩୦ ନିୟୁତ କୋଶ ଅନ୍ତରେ ଭ୍ରମଣ କରି ତିନ ମାସରେ ସୂର୍ଯ୍ୟକୁ ବୁଲଇ । ଏଣୁ ସେ ଏକ ଘଣ୍ଟାରେ ଏକ ଲକ୍ଷ କୋଶ ଚଳଇ ।

ଶିଷ୍ୟ । ବୁଧର ପରିମାଣ କେତେ ବଡ଼?

ଗୁରୁ । ତାହାର ମଧ୍ୟଭାଗରେ ମାପିଲେ ୩୨୦୦୦ କୋଶ । କେବେ୨ ସୂର୍ଯ୍ୟର ଉଦୟଁବେଳର ଅଳ୍ପ ପୂର୍ବରେ ସୂର୍ଯ୍ୟର ପଶ୍ଚିମ-ରେ ଏହି ଗ୍ରହକୁ ଦେଖିବାକୁ ହୋଏ । ପୁଣି ଅସ୍ତ ହେଲାଉତ୍ତା-ରେ ସୂର୍ଯ୍ୟର ପୂର୍ବ ଦଗରେ ଦେଖିବାକୁ ହୋଏ । ଏହି ଗ୍ରହ ଅତ ଶୁକ୍ଳ, ତେଜସ୍କର ।

ଶିଷ୍ୟ । ଏହାର ଉତ୍ତରୁ କି କି ଗ୍ରହ ସୂର୍ଯ୍ୟର ନିକଟ?

ଗୁରୁ । ତାହାଠାରୁ ଶୁକ୍ର ନିକଟ । ଆମ୍ଭମାନଙ୍କର ଦୃଷ୍ଟିରେ ଏହି ଗ୍ରହ ସମସ୍ତ ଗ୍ରହରୁ ସୁନ୍ଦର, ବଡ ଦେଖା ଯାଏ । ଯେତେବେଳେ ଏହି ଗ୍ରହକୁ ସୂର୍ଯ୍ୟର ଉଦୟ ପୂର୍ବରେ ତାହାର କିଞ୍ଚିତ ପଶ୍ଚିମରେ ଦେଖା ଯାଏ ତେତେବେଳେ ତାହାକୁ ପାହାନ୍ତିଆ ତାରା ବୋଲି ଆଉ ଅସ୍ତଗତ ହେଲେ ଯେତେବେଳେ ସୂର୍ଯ୍ୟର କିଞ୍ଚିତ୍ ପୂର୍ବରେ ଦେଖାଯାଏ ତେତେବେଳେ ତାହାକୁ ସଞ୍ଜ ତାରା ବୋଲି । ତା-ହାର ବ୍ୟାସ ୨୨୦୬ କୋଶ ।

ଶିଷ୍ୟ । ଶୁକ୍ର ସୂର୍ଯ୍ୟଠାରୁ କେତେ ଦୂର?

ଗୁରୁ । ଶୁକ୍ର ଗ୍ରହ ଭୂଗୋଳ, ବୁଧର ମଧ୍ୟଦେଶରେ ସୂର୍ଯ୍ୟଠାରୁ ୬୮ ନିୟୁତ କୋଶ ଅନ୍ତରେ ଥାଇ ଭ୍ରମଣ କରୁଅଛି । ସେ ଆପଣା ଅକ୍ଷରେ ଆଠ ପ୍ରହରରେ ଥରେ ବୁଲି ସୂର୍ଯ୍ୟକୁ ୨୨୫ ଦିନରେ ବୁଲଇ । ଏଣୁ ଏକ ଘଣ୍ଟାରେ ଏହି ଗ୍ରହ ୨୫୦୦୦ କୋଶ ବୁଲଇ ।

---

## ପୃଥିବୀ ବିଷୟ ।

ଶିଷ୍ୟ । ଶୁକ୍ର ଉତ୍ତରେ ଆଉ କେଉଁ ଗ୍ରହ ନିକଟ?

ଗୁରୁ । ଶୁକ୍ର ଉତ୍ତରେ ଭୂଗୋଳ ଆଉ ତାହାର ସଙ୍ଗ ଚନ୍ଦ୍ର ନିକଟ । ପୃଥିବୀ ସୂର୍ଯ୍ୟଠାରୁ ୯୫ ନିୟୁତ କୋଶ ଅନ୍ତର ହୋଇ ଭ୍ରମଣ କରଇ ତାହାର ମଧ୍ୟଭାଗ ପ୍ରାୟ ୮୦୦୦ କୋଶ ପରିମାଣ ହୁଏଇ ।

ଶିଷ୍ୟ । ପୃଥିବୀ କେତେ ବେଗ କରି ସୂର୍ଯ୍ୟଙ୍କୁ ବୁଲଇ ?

ଗୁରୁ । ୩୬୫ ଦିନ ଛଅ ଘଣ୍ଟାରେ ଅର୍ଥାତ ଅମ୍ଭମାନଙ୍କର ଏକ ବରଷରେ ସୂର୍ଯ୍ୟଙ୍କୁ ବୁଲଇ । ସେ ଏକ ଘଣ୍ଟାରେ ୬୮୦୦୦ କ୍ରୋଶ ଅବା ନିମିଷରେ ୧୧୦୦ କୋଶ ଚଳଇ ।

ଶିଷ୍ୟ । ଭୂଗୋଲର ଅଉ କୌଣସି ପ୍ରକାର ଗମନ କି ନାହିଁ ?

ଗୁରୁ । ହଁ ସୂର୍ଯ୍ୟଙ୍କୁ ବୁଲିବାକୁ ଯେଉଁ ଗମନ ତାହାର ନାମ ବାର୍ଷିକ ଗମନ ତାହା ବିନୁ ଅଉ ଗମନକୁ ଦୈନିକ ଗମନ କୁହା ଯାଏ । ଏହି ଦୁଇ ଗତରେ ପୃଥିବୀ ଏକ ଶଗଡ ଚକ୍ରର ତୁଲ୍ୟ ଗମନ କରଇ । ଯେହେତୁ ଚକ ଯେମନ୍ତ ବୁଲି ଅଗ୍ରସର ହୁଅଇ ତେମନ୍ତ ପୃଥିବୀ ।

ଶିଷ୍ୟ । ପୃଥିବୀର ଗମନ ଅମ୍ଭମାନଙ୍କର ବୋଧ ନ ହୁଅଇ କିପାଁଇ ?

ଗୁରୁ । ପୃଥିବୀର ସବନ୍ଧ ବ୍ୟାପିଥିବାରୁ ପୁଣି ଅଉ ସବୁ ବସ୍ତୁ ତାହାର ସଙ୍ଗରେ ଗମନ କରଇ ଏଥିପାଁଇ ।

[ପୃଥିବୀର ବିଷୟରେ ଅଉ ଉପଦେଶ ଭୂଗୋଲ ବୃତ୍ତାନ୍ତ ଅର୍ଥାତ ପ୍ରଥମ ଭାଗରେ ଲେଖାଅଛି ।]

---

## ବିଷୁବରେଖା, ପୃଥିବୀର ବକ୍ର ଗତର ବିଷୟ ।

ଶିଷ୍ୟ । ବିଷୁବରେଖା କାହାକୁ ବୋଲି ?

ଗୁରୁ । ଆକାଶରେ ରେଖାଭୂମିର ଠିକ ଉପରରେ ଏକ ରେଖା କଲ୍ପଣା କରାଯାଏ ତାହାର ନାମ ବିଷୁବରେଖା । ସୂର୍ଯ୍ୟ ୧୧ ଫାଲ୍ଗୁନ ୧୧ ଚୈତ୍ର ସେହି ରେଖାଭୂମିର ଉପରେ ଥାଏ ପୁଣି ସେ ଦିନରେ ତାହାର ତେଜ ଠିକ ସଳଖରେ ପୃଥିବୀରେ ପଡଇ ଏହିହେତୁ ସବନ୍ଧ ଦିବା ରାତ୍ରି ସମାନ ହୁଅଇ । ସେ ସମୟ ବିଷୁବ-କାଳ କୁହା ଯାଏ । ଅଉ ସେ ସମୟରେ ଦୁଇ ପହରବେଳେ

ରେଖାଭୂମିର ଉପରେ କଛୁ ଛାୟା ନ ପଡଇ । ଏଥିରେ ତାରକ୍ଷ ଏକ ନାମ କୁହା ଯାଏ ।

ଶିଷ୍ୟ । ସୂର୍ଯ୍ୟର ତେଜ ସର୍ବଦା ସମାନ ରେଖାଭୂମିରେ ନ ପଡଇ କିପାଇ ?

ଗୁରୁ । ପୃଥିବୀର ବକ୍ରଗମନ ହେତୁରୁ ତାହା ରେଖା ସ୍ଥାନରୁ ୧୧ ପୌଷ ପର୍ଯ୍ୟନ୍ତେ କ୍ରମଶେ ଦକ୍ଷିଣ ଅତେ ତେଇଶ ଅଂଶ ଅପେବକ୍ର ଗମନ କରଇ ସେହି ଦିନାବଧି ପୁନର୍ବାର ଉତ୍ତର ଅତେ ଫେର ଆସଇ ପୁଣି ୧୧ ଚୈତ୍ରରେ ପୃଥିବୀର ମଧ୍ୟରେ ବିଷୁବରେଖାରେ ପହୁଞ୍ଚଇ । ସେହି ଦିନାବଧି ୧୧ ଆଷାଢ଼ ପର୍ଯ୍ୟନ୍ତେ ଉତ୍ତର ଅତରେ ତେଇଶ ଅଂଶ ଅପେ ପର୍ଯ୍ୟନ୍ତେ ପୃଥିବୀ ଯାଏ ଏହି ୧୧ ଅଶ୍ୱି-ନରେ ପୁନରପି ପୃଥିବୀର ମଧ୍ୟରେ ବିଷୁବରେଖାରେ ପହୁଞ୍ଚଇ ।

ଶିଷ୍ୟ । ଏହି ବକ୍ରଗତିର ନାମ କି ?

ଗୁରୁ । ଏ ଦକ୍ଷିଣ ଗମନର ନାମ ଦକ୍ଷିଣାୟନ, ଉତ୍ତର ଗମ-ନର ନାମ ଉତ୍ତରାୟଣ ।

ଶିଷ୍ୟ । ପୃଥିବୀର ବକ୍ରଗତିର ଫଳ କି ?

ଗୁରୁ । ଯେବେ ସୂର୍ଯ୍ୟର ତେଜ ସେହି ସୂତ୍ରେ ସର୍ବଦା ସମାନ ଭାବେ ପଡନ୍ତା ତେବେ ଗ୍ରୀଷ୍ମ, ଶୀତ ଇତ୍ୟାଦି ଋତୁଭେଦ ନ ହୁଅନ୍ତା ଦିବାରାତ୍ରି ସମାନ ହୁଅନ୍ତା ପୁଣି ପୃଥିବୀର ବକ୍ରଗତି ହେତୁରୁ ଋତୁ-ଭେଦ ହୁଅଇ ଦିବାରାତ୍ରିର ହ୍ରାସ ବୃଦ୍ଧି ହୁଅଇ ।

ଶିଷ୍ୟ । ପୃଥିବୀ କେଉଁ ଦିଗରୁ ବୁଲଇ ?

ଗୁରୁ । ପୃଥିବୀ ପଶ୍ଚିମରୁ ପୂର୍ବାଭିମୁଖ ହୋଇ ଆପଣା ଅକ୍ଷରେ ବୁଲୁ ଏକ ଦଣ୍ଡର ମଧ୍ୟରେ ୬ ଅଂଶ ସୂର୍ଯ୍ୟର ସମ୍ମୁଖବର୍ତ୍ତୀ ହୁଅଇ ସେହି ହେତୁ ପୃଥିବୀସ୍ଥ ଲୋକମାନଙ୍କର ଆପଣା ସ୍ଥାନା-ନୁସାରେ ୬ ଅଂଶେ ୧ ଦଣ୍ଡ ଦେଶାନ୍ତର ହୁଅଇ ।

ଶିଷ୍ୟ । କ୍ରାନ୍ତି କାହାକୁ ବୋଲି ?

ଗୁରୁ । ବିଷୁବରେଖାର ଦୁଇ ପାର୍ଶ୍ୱେ ଆକାଶର ଯେ ତେଇଶ ଅଂଶ ଅଛେ ପର୍ଯ୍ୟନ୍ତେ ପୃଥିବୀର ବକ୍ରଗମନ ହୁଅଇ ତାହାର ନାମ କ୍ରାନ୍ତି ।

ଶିଷ୍ୟ । ଅମ୍ଭେ ରାଶିଚକ୍ର ନାମ ଅନେକ ଥର ଶୁଣିଲୁଁ, ସେ କି?

ଗୁରୁ । ବିଷୁବରେଖାର ଦୁଇ ପାର୍ଶ୍ୱେ ଏହି କ୍ରାନ୍ତିର ସତଚାଳିଶ ଅଂଶର ଗୋଲାକୃତ ସ୍ଥାନ ଅଛି । ସେ ସ୍ଥାନରେ ଯେଉଂ ତାରା ଦେଖା ଯାଏ ସେହି ତାରା ସବୁ ନାନା ପ୍ରାଣିର ଆକାର କଳ୍ପଣା କରି ସେ ସ୍ଥାନର ବାର ଭାଗ ହୋଇଅଛି ତାହାର ନାମ ରାଶି ଅର୍ଥାତ୍ କ୍ରାନ୍ତିର ବାର ପ୍ରକାର ଚିହ୍ନ ।

ଶିଷ୍ୟ । ସେ ବାର ଚିହ୍ନର ନାମ କି?

ଗୁରୁ । ରାଶି ଯେଉଂ ପ୍ରାଣିର ଆକାର ନ୍ୟାୟ ସେ ପ୍ରାଣିର ନାମ ପାଇଅଛି ଅର୍ଥାତ୍ ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଲା, ବୃଶ୍ଚିକ, ଧନୁ, ମକର, କୁମ୍ଭ, ମୀନ । ସୂର୍ଯ୍ୟ ଯେତେ-ବେଳେ କୌଣସି ରାଶିରେ ପ୍ରବେଶ ହୁଅଇ ତେତେବେଳେ ଏକ ନୂଆ ମାସ ହୁଅଇ, ଲୋକେ କହନ୍ତି ଯେଂ ସୂର୍ଯ୍ୟ ଅମୁକ ରାଶିରେ ପ୍ରବେଶ ହୁଅନ୍ତି ପୁଣି ସେ ପ୍ରମାଣ ନୋହେ କେବଳ ପୃଥିବୀ ରାଶି-ରେ ପ୍ରବେଶଇ । ଆଉ ନୂଆ ରାଶିରେ ସୂର୍ଯ୍ୟର ପ୍ରବେଶ ହେବାର ନାମ ଲୋକେ ସଂକ୍ରାନ୍ତି କହନ୍ତି ।

---

## ପୃଥିବୀର କଟିବନ୍ଧ ବିଷୟ ।

ଶିଷ୍ୟ । ପୃଥିବୀର କେତେ କଟିବନ୍ଧ ଅଛି?

ଗୁରୁ । ପାଞ୍ଚ କଟିବନ୍ଧ ଅର୍ଥାତ୍ ଉଷ୍ଣକଟିବନ୍ଧ ଏକ । ସମକଟି-ବନ୍ଧ ଦୁଇ । ଶୀତକଟିବନ୍ଧ ଦୁଇ ।

ଶିଷ୍ୟ । ଉଷ୍ଣ କଟିବନ୍ଧ କି?

ଗୁରୁ । ରେଖାଭୂମିର ଉତ୍ତର ଦକ୍ଷିଣେ ତେଇଶ ଅଂଶ ଅଛେ

ପର୍ଯ୍ୟନ୍ତେ ଉଷ୍ଣ କଟିବନ୍ଧର ସୀମା । ଏହ କଟିବନ୍ଧର ସମସ୍ତ ଦେଶ ସୂର୍ଯ୍ୟର ସମ୍ମୁଖବର୍ତ୍ତୀ ସକାଶୁ ଅତି ଉଷ୍ଣ ଏହ କଟିବନ୍ଧର ମଧ୍ୟରେ ଉତ୍କଳ ଦେଶ ଅଛୁ ।

ଶିଷ୍ୟ । ସମକଟିବନ୍ଧ କାହାକୁ କହ ?

ଗୁରୁ । ଉଷ୍ଣକଟିବନ୍ଧର ଉତ୍ତର, ଦକ୍ଷିଣ ଦୁଇ ଦଗରେ ୪୩ ଅଂଶ ପର୍ଯ୍ୟନ୍ତେ ସମକଟିବନ୍ଧର ସୀମା । ଏହ ଦୁଇ କଟିବନ୍ଧର ଉଷ୍ଣତା, ଶୀତଳ ଅଧିକ ନୋହେ ଏନମନ୍ତେ ସମକଟିବନ୍ଧ ଲୋକେ କହନ୍ତି । ଉତ୍ତର ସମକଟିବନ୍ଧ ମଧ୍ୟରେ ଇଙ୍ଗ୍ଲାଣ୍ଡ ଦେଶ ଅଛୁ ।

ଶିଷ୍ୟ । ଶୀତକଟିବନ୍ଧ କ ?

ଗୁରୁ । ଉତ୍ତର ସମକଟିବନ୍ଧରୁ ଉତ୍ତର କେନ୍ଦ୍ର ପର୍ଯ୍ୟନ୍ତେ ୨୩୨ ଅଂଶ ଉତ୍ତର ଶୀତକଟିବନ୍ଧ ପୁଣି ଦକ୍ଷିଣ କେନ୍ଦ୍ର ପର୍ଯ୍ୟନ୍ତେ ୨୩୨ ଅଂଶ ଦକ୍ଷିଣ ଶୀତକଟିବନ୍ଧ ଲୋକେ କହନ୍ତି ଏହ ଦୁଇ କଟିବନ୍ଧ ଅତଶଯ୍ ଶୀତଳ ।

ଉତ୍ତର ୯୦ । ୯୦ କେନ୍ଦ୍ର




ଦକ୍ଷିଣ ୯୦ । ୯୦ କେନ୍ଦ୍ର

ଶିଷ୍ୟ । ଏମନ୍ତ ବିଶେଷ ହେବାର କାରଣ କି?

ଗୁରୁ । ଉଷ୍ଣକଟିବନ୍ଧ ସୂର୍ଯ୍ୟର ଠିକ୍ ସମ୍ମୁଖବର୍ତ୍ତୀ । ସମକଟିବନ୍ଧ କିଞ୍ଚିତ୍ ପାର୍ଶ୍ୱରେ । ଶୀତକଟିବନ୍ଧ ଅତିଶୟ ପାର୍ଶ୍ୱରେ ହୁଅଇ ଏହି କାରଣ ।

---

## ଚନ୍ଦ୍ର ।

ଶିଷ୍ୟ । ଭୂଗୋଲରୁ ଚନ୍ଦ୍ର କେତେ କୋଶ ଅନ୍ତର?

ଗୁରୁ । ପୃଥିବୀଠାରୁ ଚନ୍ଦ୍ର ପ୍ରାୟ ୨୪୦୦୦୦ କୋଶ ଅନ୍ତର । ତାହାର ବ୍ୟାସ ୨୧୮୦ କୋଶ । ଚନ୍ଦ୍ରଠାରେ ଅମ୍ଭମାନଙ୍କର ଭୂଗୋଲ ଏକ ଚନ୍ଦ୍ର ହୁଅଇ ମାତ୍ର ଅମ୍ଭମାନଙ୍କର ଚନ୍ଦ୍ରଠାରୁ ସେମାନଙ୍କର ଦୃଷ୍ଟିରେ ଭୂଗୋଲ ତେର ଗୁଣ ବଡ ହୁଅଇ ।

ଶିଷ୍ୟ । ଚନ୍ଦ୍ର ପୃଥିବୀକୁ କେତେ ଶୀଘ୍ର କରି ବୁଲଇ?

ଗୁରୁ । ଚନ୍ଦ୍ର ଅଢ଼ାଇ ଦଣ୍ଡରେ ୨୨୯୦ କୋଶ ଚଳଇ ଏଣୁ ଊଣତିରିଶ ଅଧେ ଦିବସରେ ପୃଥିବୀକୁ ପ୍ରଦକ୍ଷିଣ କରଇ । ତାହାର ସହିତ ସୂର୍ଯ୍ୟକୁ ବୁଲଇ ।

ଶିଷ୍ୟ । ଅମ୍ଭେମାନେ ଚନ୍ଦ୍ରକୁ ସର୍ବଦା ନ ଦେଖୁଁ କପାଇଁ?

ଗୁରୁ । ପୃଥିବୀ, ସୂର୍ଯ୍ୟର ମଧ୍ୟ ସ୍ଥାନରେ ଯେତେବେଳେ ଚନ୍ଦ୍ର ଥାଏ ତେତେବେଳେ ଦୀପ୍ତିହୀନ ଚନ୍ଦ୍ରର ଅର୍ଦ୍ଧଭାଗ ଅମ୍ଭମାନଙ୍କର ସମ୍ମୁଖରେ ଥାଏ ଏହି କାରଣେ ଅମ୍ଭେମାନେ ସେ ସମୟରେ ଚନ୍ଦ୍ରର ଅଂଶ ଦେଖିବାକୁ ନ ପାଉଁ । ପୁଣି କେତେବେଳେ ପୃଥିବୀର ତଳେ ଚନ୍ଦ୍ର ଯାଏ ତେଣୁ ଦୃଷ୍ଟି ନ ହୁଅଇ ।

ଶିଷ୍ୟ । ଗ୍ରହଣ କାହାକୁ କୁହା ଯାଏ?

ଗୁରୁ । ଯେତେବେଳେ ଚନ୍ଦ୍ରର ଛାୟା ପୃଥିବୀର ଉପରେ ପଡଇ ତେତେବେଳେ ସୂର୍ଯ୍ୟକୁ ନ ଦେଖିବା ସକାଶୁଁ ଅମ୍ଭେମାନେ ବୋଲୁ

ସୂର୍ଯ୍ୟ ଗ୍ରହଣ ହୁଅଇ ପୁଣି ଚନ୍ଦ୍ରର ଯେମନ୍ତ ଅଳ୍ପ, ବଡ ଛାୟା ହୁଅଇ ତେମନ୍ତ ଗ୍ରହଣଇ ଅଳ୍ପ, ବଡ ହୁଅଇ । ଯେତେବେଳେ ପୃଥିବୀର ଛାୟା ଚନ୍ଦ୍ରର ଉପରେ ଲାଗଇ ତେତେବେଳେ କହି ଯେ ଚନ୍ଦ୍ରର ଗ୍ରହଣ ହୁଅଇ ।

ଶିଷ୍ୟ । ସୂର୍ଯ୍ୟର ଗ୍ରହଣ କେତେବେଳେ ହୁଅଇ ?

ଗୁରୁ । ଯେତେବେଳେ ଚନ୍ଦ୍ର ନୂଆ ହୁଅଇ ।

ଶିଷ୍ୟ । ଚନ୍ଦ୍ର ଗ୍ରହଣ କେତେବେଳେ ହୁଅଇ ?

ଗୁରୁ । ଯେତେବେଳେ ଚନ୍ଦ୍ର ପୂର୍ଣ୍ଣ ହୁଅଇ ।

ଶିଷ୍ୟ । ଚନ୍ଦ୍ର ସ୍ୱୟଂ ପ୍ରକାଶ ହୀନ ତେବେ ତାହାଠାରୁ ଅମ୍ଭେମାନେ କି ଫଳ ପାଉ ?

ଗୁରୁ । ଚନ୍ଦ୍ର ସୂର୍ଯ୍ୟର କିରଣ ପାଇ ଅମ୍ଭମାନଙ୍କୁ ଦୀପ୍ତି ପ୍ରଦାନ କରଇ, ଅନ୍ଧକାରମୟ ଯେ ଦୀର୍ଘ ରାତ୍ରିରେ ସେହି ଦୀପ୍ତି ବଡ ସୁଖଦାୟିକା, ଉପକାରିକା ହୁଅଇ । ଏଣୁକରି ଦେଖ ଅମ୍ଭମାନଙ୍କର ପ୍ରତି ଈଶ୍ୱରଙ୍କର କେମନ୍ତ ଅନୁଗ୍ରହ ପ୍ରକାଶ ଯେ ସମୟରେ ସୂର୍ଯ୍ୟର ତେଜ ନ ହୋଏ ଚନ୍ଦ୍ରଠାରୁ ଅମ୍ଭେମାନେ ତେତେବେଳେ ଆଲୁଅ ପାଉ ।

ଶିଷ୍ୟ । ଚନ୍ଦ୍ରଠାରୁ କି ଅମ୍ଭେମାନେ ଆଉ କୌଣସି ଫଳ ପାଉ ?

ଗୁରୁ । ହାଁ, ଚନ୍ଦ୍ର, ସୂର୍ଯ୍ୟଦ୍ୱାରା ସମୁଦ୍ରର ଜୁଆର ଭଟ୍ଟା ହୁଅଇ ତହିଁରେ ସମୁଦ୍ରର ଜଳ ନିର୍ମଳ ହୁଅଇ, ବୋଇତସ୍ଥ ଲୋକଙ୍କର ପରମ ଉପକାର କରଇ ।

ଶିଷ୍ୟ । ଚନ୍ଦ୍ରର ମଧ୍ୟରେ ଯେ କଳଙ୍କାକାର ଦେଖା ଯାଏ ସେ କି ?

ଗୁରୁ । ଅନେକ ବିଜ୍ଞ ଲୋକ ଅନୁମାନ କରନ୍ତି ଯେ ସେ ସବୁ ପର୍ବତର ନିକଟ ଭାଗ ଯାହା ସୂର୍ଯ୍ୟର କିରଣରେ ପ୍ରକାଶ ହୁଅଇ ନାହିଁ ।

ଶିଷ୍ୟ । ଅନ୍ୟ ଗ୍ରହଗଣରେ, ଚନ୍ଦ୍ରମଣ୍ଡଳରେ କି କୌଣସି ଲୋକ ବସତି କରନ୍ତି ?

ଗୁରୁ । ପଣ୍ଡିତ ଲୋକ କହନ୍ତି ଯେ ଲୋକେ ତହିଁରେ ଅଛନ୍ତି ପୁଣି ଏ ଶରକ କିଛି ନିଶ୍ଚୟ ପ୍ରମାଣ ପ୍ରାପ୍ତ ନୋହିଲା ।

---

## ମଙ୍ଗଳ ।

ଶିଷ୍ୟ । ଭୂଗୋଳର ନିକଟରେ କେଉଁ ଗ୍ରହ ଅଛି ?

ଗୁରୁ । ମଙ୍ଗଳ । ତାହାଠାରୁ ଆମ୍ଭର ପୃଥିବୀ ପାଞ୍ଚ ଗୁଣ ବଡ । ସେ ଲାଲବର୍ଣ୍ଣ ହୋଇ ଚିହ୍ନା ଯାଏ । ସୂର୍ଯ୍ୟଠାରୁ ତାହାର ପଥ ୧୪୪ ନିୟୁତ କୋଶ ଛଡା । ପୁଣି ତାହାର ବ୍ୟାସ ୪୨୦୦ କୋଶ ।

ଶିଷ୍ୟ । ମଙ୍ଗଳ କେତେ ଶୀଘ୍ର ଗମନ କରଇ ?

ଗୁରୁ । ଅଢାଇ ଦଣ୍ଡରେ ୫୫ ହଜାର କୋଶ । ପୁଣି ୬୮୭ ଦିନରେ ସେ ସୂର୍ଯ୍ୟକୁ ବୁଲଇ । ଏହି ଗ୍ରହ କେବେ୨ ପାହାନ୍ତିତାରା କେବେ୨ ସନ୍ଧ୍ୟାତାରା ହୋଇ ଦେଖା ଯାଏ । ପୁଣି ଏକ ସମୟରୁ ଅନ୍ୟ ସମୟରେ ଅଧିକ ବଡ ଦେଖା ଯାଏ ।

---

## ସାନ ଗ୍ରହ ।

ଶିଷ୍ୟ । କେଉଁ ଗ୍ରହ ମଙ୍ଗଳ ନିକଟ ହୁଅଇ ?

ଗୁରୁ । ଅଉ ବଡ ଗ୍ରହ ବୃହସ୍ପତି ପୁଣି ବୃହସ୍ପତିର ପଥ, ମଙ୍ଗଳର ପଥ ମଧ୍ୟରେ ଚାରି ସାନ ଗ୍ରହ ଅର୍ଥାତ୍ ବେସ୍ତା, ଜୁନୋ, ପାଲ୍ଲସ, ସିରସ ଅଛଇ ।

ଶିଷ୍ୟ । ଏମାନଙ୍କର ବିଷୟ ବିଶେଷ କରି କିଛି କହିବା ହେଉ ।

ଗୁରୁ । ସୂର୍ଯ୍ୟଠାରୁ ବେସ୍ତା ୨୨୫ ନିୟୁତ କୋଶ । ଜୁନୋ ୨୫୨ ନିୟୁତ କୋଶ । ସୀରସ ୨୬୩ ନିୟୁତ କୋଶ । ପାଲ୍ଲସ ୨୬୩ ନିୟୁତ କୋଶ । ବେସ୍ତା ତିନି ବରସ ଦୁଇ ମାସେ ସୂର୍ଯ୍ୟକୁ ବୁଲଇ ।

ଲୁନୋ ଗ୍ରହ ବରସ ଗ୍ରହ ମାସରେ ସୂର୍ଯ୍ୟଙ୍କୁ ବୁଲଇ । ସିରସ ଗ୍ରହ ବରସ ସାଢ ମାସରେ ସୂର୍ଯ୍ୟଙ୍କୁ ବୁଲଇ । ପାଲ୍ଲସ ଗ୍ରହ ବରସ ସାଢ ମାସରେ ସୂର୍ଯ୍ୟଙ୍କୁ ବୁଲଇ । ସେମାନଙ୍କର ବ୍ୟାସର ପରିମାଣ କେତେ ଏହା ନିଶ୍ଚୟ ଯାଇ ନାହିଁ ପୁଣି ସାନ ପ୍ରାୟ ୮୦ କୋଶ ବଡ ପ୍ରାୟ ୨୦୦୦ କୋଶ ବୋଧ ହୁଅଇ ।

---

## ବୃହସ୍ପତି ।

ଶିଷ୍ୟ । ସୂର୍ଯ୍ୟଠାରୁ ବୃହସ୍ପତି କେତେ ଦୂର ପୁଣି ତାହାର ପରିମାଣ କେତେ?

ଗୁରୁ । ବୃହସ୍ପତି ସୂର୍ଯ୍ୟଠାରୁ ୪୧୦ ନିୟୁତ କୋଶ ଅନ୍ତର ପୁଣି ଏମନ୍ତ ଅତ୍ୟନ୍ତ ବଡ ଯେ ତାହାର ବ୍ୟାସ ୮୧୦୦୦ କୋଶ ଆଉ ସେ ଅତାଇ ଦଣ୍ଡରେ ୨୧୦୦୦ କୋଶ ଗ୍ଲଇ ।

ଶିଷ୍ୟ । ବୃହସ୍ପତିର ଗ୍ରହ ଚନ୍ଦ୍ର ବିଷୟରେ କି କିଛି ନିଶ୍ଚୟ ହୁଅଇ?

ଗୁରୁ । ଅନୁମାନ ହୁଅଇ ତାହାର କେହି ୨ ଚନ୍ଦ୍ର ଭୂଗୋଳର ତୁଲ୍ୟ ପୁଣି ଆଉ କେହି ୨ କିଛି ସାନ ଅଟଇ । ତାହାର ନିକଟ ଯୋ ଚନ୍ଦ୍ର ଦେଖା ଯାଏ ସେ ୨୨୦୦୦ କୋଶ ଅନ୍ତର ଆଉ ଏକ ଦିନ ଛ ପ୍ରହରରେ ତାହାକୁ ବୁଲଇ ।

---

## ଶନି ।

ଶିଷ୍ୟ । ଶନି ସୂର୍ଯ୍ୟଠାରୁ କେତେ କୋଶ ଅନ୍ତର?

ଗୁରୁ । ସୂର୍ଯ୍ୟଠାରୁ ଶନି ୧୦୦୦ ଅର୍ବୁଦ କୋଶ ଅନ୍ତର । ତାହାର ବ୍ୟାସର ପରିମାଣ ୭୯୦୦୦ କୋଶ । ସେ ଅତାଇ ଦଣ୍ଡରେ ୨୨୦୦୦ କୋଶ ଗମନ କରଇ ପୁଣି ତିରିଶ ବରସରେ ଗ୍ଲିଁ ୨ ସୂର୍ଯ୍ୟଙ୍କୁ ବୁଲଇ ।

ଶିଷ୍ୟ । ଶନିର ବିଶେଷ ଲକ୍ଷଣ କି ଅଛି?

ଗୁରୁ । ଶନିର ଏକ ମହାଶ୍ଚର୍ଯ୍ୟ ଅଲୂଅମୟ ଚକ୍ରାକୃତ ଅଛଇ ସେହି ଚକ୍ରାକୃତ ୨୨ ହଜାର କୋଶ ଓସାର ।

---

## ହର୍ଶ୍ଚଲ ।

ଶିଷ୍ୟ । ସପ୍ତରେ ବଡ ଗ୍ରହ ସୂର୍ଯ୍ୟର କେତେ ଦୂର?

ଗୁରୁ । ହର୍ଶ୍ଚଲ ଗ୍ରହ ୧୮୨୨ ହଜାର ୪୦ କୋଟିଏ କୋଶ ସୂର୍ଯ୍ୟର ଅନ୍ତର । ତାହାର ବ୍ୟାସ ୩୫୧୧୨ କୋଶ । ଅତାଇ ଦଣ୍ଡରେ ୭୦୦୦ କୋଶ ଗମନ କରି ସେ ୮୨ ବରସରେ ସୂର୍ଯ୍ୟକୁ ବୁଲଇ ।

ଶିଷ୍ୟ । ହର୍ଶ୍ଚଲ ଗ୍ରହର ଆଉ କୌଣସି ନାମ ଅଛି କି ନାହିଁ?

ଗୁରୁ । ହାଁ, କେବେ୨ ତାହାର ଜର୍ଜିୟମ ସୀଦସ ନାମ ପୁଣି କେବେ୨ ଉରେନସ ନାମ ହୁଅଇ । ଅକ୍ଷୀ ମାତ୍ରରେ ଏହାକୁ ଦେଖିବାକୁ ଦୁଷ୍କର ଏଣୁ ହିନ୍ଦୁ ଜ୍ୟୋତବେତ୍ତାଗଣଙ୍କୁ ଏହି ଗ୍ରହ ଜଣା ନୋହିଲା ।

---

## ଧୂମକେତୁ ଇତ୍ୟାଦ ବିଷୟ ।

ଶିଷ୍ୟ । ଧୂମକେତୁଗଣ କି ଅଗ୍ନିମୟ କୌଣସି ବସ୍ତୁ?

ଗୁରୁ । ତାହା ନୋହେ ପୁଣି ସୂର୍ଯ୍ୟର ଦୀପ୍ତିରେ ପ୍ରକାଶମାନ ହୁଅଇ । ସେମାନଙ୍କର ଲାଙ୍ଗୂଳରୁ ଅମ୍ଭେମାନେ ଏହା ଅନୁମାନ କରୁଥାଉ ।

ଶିଷ୍ୟ । ସେ ଲାଙ୍ଗୂଳ କି ଅଗ୍ନିମୟ ନୋହେ?

ଗୁରୁ । ନା ଅନୁମାନ ହୁଅଇ ଯେ ସେ କେବଳ ଧୂମକେତୁର ସ୍ଥିରବାୟୁ ତହିଁରେ ସୂର୍ଯ୍ୟର କିରଣ ସଂଯୁକ୍ତ ହୁଅଇ ।

ଶିଷ୍ୟ । ସମସ୍ତ ଗ୍ରହଠାରୁ ଧୂମକେତୁ କି ସୂର୍ଯ୍ୟର ଅତି ଦୂରେ ନ ଯାଏ?

ଗୁରୁ । ହାଁ, ଏମନ୍ତ ପ୍ରମାଣ ଉହିଁରେ ଅମ୍ଭେମାନେ ବୋଧ କରୁ ଯେ ଆକାଶ ଅପରିମିତ ବିସ୍ତାର । ୧୭୫୮ ସାଲେ ଯୋ ଧୂମକେତୁ ଦେଖା ଗଲା ନିଶ୍ଚୟ ହୋଇଲା ଯେ ୭୫ ବରଷରେ ଏହି ଧୂମକେତୁ ଥରେ ସୂର୍ଯ୍ୟକୁ ଭ୍ରମଣ କରଇ । ଧୂମକେତୁଗଣର ମଧ୍ୟରେ କୌଣସି୨ ଧୂମକେତୁର ସୂର୍ଯ୍ୟ ଭ୍ରମଣ ପଥ ଏହିରୂପେ ନିଶ୍ଚିତ ଅଛି ଯେ ଧୂମକେତୁ ଦୃଷ୍ଟ ହୋଇଲେ କେତେ ବରଷ ଉତ୍ତରେ ପୁନର୍ବାର ଦେଖା ଯିବ ତାହା ପଣ୍ଡିତମାନେ କହିବାକୁ ପାରନ୍ତି ।

ଶିଷ୍ୟ । ଧୂମକେତୁର ଉଦୟ ହେଲେ ଜଗତର କି ଉତ୍ପାତ ହୁଅଇ ?

ଗୁରୁ । ତାହା ନୋହେ ତାହାର ଉଦୟ ହେଲେ କୌଣସି ଲୋକ ବ୍ୟାକୁଳ ହୋଇ କୁହନ୍ତି ଯେ ସବୁ ଲୋକର ବଡ ଉପଦ୍ରବ ଘଟିବ । ପୁଣି ଧୂମକେତୁ ଉପଦ୍ରବର କାରଣ ନ ଅଟଇ ଯେହେତୁ ସେମାନଙ୍କର ଉଦୟ ହେଲେ କେବଳ ଯୁଦ୍ଧ, ମାରି, ଭୟ, ଦୁର୍ଭିକ୍ଷ ଆଦି ହୁଅଇ ଏମନ୍ତ ନୋହେ ପୁଣି ସନ୍ଧି, ଶାନ୍ତି, ସୁଭିକ୍ଷ ଇତ୍ୟାଦି ହୁଅଇ ।

ଶିଷ୍ୟ । ନକ୍ଷତ୍ରର ଯେ ପତନ ଦେଖା ଯାଏ, ସେ କି ?

ଗୁରୁ । ସେ ନକ୍ଷତ୍ରର ପତନ ନୋହେ ପୁଣି ସୂର୍ଯ୍ୟର ତାପରେ ଆକାଶରେ ଉଠିବାର କୌଣସି ବସ୍ତୁର ଭାଗ । ତାହା ମଧ୍ୟରେ ଅଗ୍ନିର କଣିକା ପ୍ରବେଶ ହୋଇ ପ୍ରଜ୍ୱଳିତ ହୁଅଇ ପୁଣି ଯାବତ ପର୍ଯ୍ୟନ୍ତେ ସେ ସବୁ ଦଗ୍ଧ ନ ହୁଅଇ ତାବତ ତାହା ଏହିରୂପେ ଦେଖା ଯାଏ ।

ଶିଷ୍ୟ । ରାତିରେ ଯେଉଁ ଆଲୁଅ ଦେଖା ଯାଏ ଯାହାକୁ ଲୋକେ ଟିରଗୁଣି କହନ୍ତି ସେ କି?

ଗୁରୁ । ଅନୁମାନ ହୁଅଇ ଯେ ସେ ବାୟୁ ବିଶେଷ ଯହିଁରେ ଅଗ୍ନିର ଯୋଗ ଥାଏ କିଅବା ମଲା ଗଛ ପତର ନିର୍ଗତ କୌ-

ଣସି ସ୍ନେହ ବସ୍ତୁ ତହିଁରେ ଅଗ୍ନି କଣିକାର ଯୋଗରେ ସେରୂପେ ଜ୍ୱଳଇ ।

ଶିଷ୍ୟ । ଉଲ୍କାପାତ ଯେ ଦେଖା ଯାଏ, ସେ କି?

ଗୁରୁ । ଅନୁମାନ ହୁଅଇ ଯେ ସେ କୌଣସି ଭସ୍ମମୟ ବସ୍ତୁ ତହିଁରେ ଅଗ୍ନି କଣିକା ପ୍ରବେଶ ହୁଅନ୍ତେ ପ୍ରଜ୍ୱଳିତ ହୁଅଇ ।

ଶିଷ୍ୟ । ଉଲ୍କାପାତ ଯେଉଁଠାରେ ହୁଅଇ ସେଠାରେ କେବେ୨ ପଥର ପଡଇ, ସେ କି?

ଗୁରୁ । କିରୂପେ ତାହାର ଉତ୍ପାଦନ ହୁଅଇ ଏହାର ନିଶ୍ଚୟ ବୋଧ ନାହିଁ । କେହି୨ ପଣ୍ଡିତ କହନ୍ତି ସେ ଅଗ୍ନିମୟ ପର୍ବତରୁ ଉଠଇ । ଆଉ କେହି୨ କହନ୍ତି ସେ ଚନ୍ଦ୍ରଠାରୁ ପଡଇ । ଆଉ ବହୁ ଲୋକ ବୋଧ କରନ୍ତି ଯେ ଆକାଶ ମଧ୍ୟରେ କୌଣସି ବସ୍ତୁରୁ ଉତ୍ପନ୍ନ ହୋଇ ସେରୂପେ ପଡଇ ।

## ଆଲୁଅର ବିଷୟ ।

ଶିଷ୍ୟ । ଆଲୁଅର ସ୍ୱଭାବର ଗୁଣ କି?

ଗୁରୁ । ସୂର୍ଯ୍ୟ କିରଣର ନାମ ଆଲୁଅ ଏହି କିରଣ ଆକାଶରେ ଅତିଶୀଘ୍ର ବ୍ୟାପ୍ତ ହୋଇ ଅତ୍ୟନ୍ତ ସୂକ୍ଷ୍ମ, ତୀକ୍ଷ୍ଣ ଭାବରେ ନିର୍ମଳ ବସ୍ତୁ ମାର୍ଗରେ ନିର୍ଗତ ହୁଅଇ ସବ ଜଗତରେ ବ୍ୟାପ୍ତ ହୁଅଇ ।

ଶିଷ୍ୟ । ସୂର୍ଯ୍ୟଠାରୁ କିରଣ ନିର୍ଗତ ହୋଇ ପୃଥିବୀରେ କେତେ କ୍ଷଣରେ ଆସଇ?

ଗୁରୁ । ପ୍ରାୟ ଅର୍ଦ୍ଧ ଦଣ୍ଡରେ ସେହି କିରଣ ଆସଇ । ଏକ ନିମେଷରେ ଦୁଇ ଲକ୍ଷ କୋଶ ଅବା ଷାଠିଏ ନିମେଷରେ ବାର ନିୟୁତ କୋଶ ଚାଲଇ ।

ଶିଷ୍ୟ । କିରୂପେ ଜାଣିବା ଯେ ସୂର୍ଯ୍ୟ କିରଣରେ ଅଗ୍ନିର ଅଂଶ ଅଛି?

ଗୁରୁ । ଏଥିପେ ଜଣା ଯାଏ ସୂର୍ଯ୍ୟ କିରଣ ସୂର୍ଯ୍ୟକାନ୍ତରେ ଯେବେ ଧରା ଯାଏ ତେବେ ତହିଁରୁ ଅଗ୍ନିର କର୍ମ ଦେଖା ହୁଅଇ ।

ଶିଷ୍ୟ । କିରଣରୁ କି ଅମ୍ଭମାନଙ୍କର ଆଉ କାର୍ଯ୍ୟ ହୁଅଇ ?

ଗୁରୁ । ହଁ, ତହିଁରୁ ନୀଳ ପୀତାଦି ସମସ୍ତ ବର୍ଣ୍ଣର ବିଶେଷ ହୁଅଇ ।

ଶିଷ୍ୟ । ସକାଳେ ସଞ୍ଜବେଳେ ସୂର୍ଯ୍ୟର କିରଣ କେମନ୍ତ ହୁଅଇ ?

ଗୁରୁ । ଏ କିରଣ ସକାଳେ କ୍ରମଶେ ବୃଦ୍ଧି ପାଏ ସଞ୍ଜବେଳେ କ୍ରମଶେ ହ୍ରାସ ହୁଅଇ । କାରଣ ଏହି ଯେ ସୂର୍ଯ୍ୟର କିରଣ ଆକାଶର ମଧ୍ୟରେ ସ୍ଥିର ବାୟୁରେ ପ୍ରବିଷ୍ଟ ଥାଏ । ଏନିମନ୍ତେ କ୍ରମଶେ ହ୍ରାସ ବୃଦ୍ଧି ହୁଅଇ । ଏମନ୍ତ ନ ହେଲେ ଉଦୟବେଳେ ଏକ ନିମେଷରେ ମଧ୍ୟାହ୍ନ କାଳର ତୁଲ୍ୟ ପ୍ରଚଣ୍ଡ କିରଣ ଉପସ୍ଥିତ ହୁଅନ୍ତା ଅସ୍ତବେଳେ ନିମେଷରେ ଘୋର ଅନ୍ଧକାର ହୁଅନ୍ତା ।

ଶିଷ୍ୟ । ତହିଁରେ କି ଲୋକଙ୍କର କିଛି କ୍ଷତି ହୁଅନ୍ତା ?

ଗୁରୁ । ହଁ, ନାନା ଦେଶରେ ଦିନର ବହୁତ ଊଣା ହୁଅନ୍ତା । ଆଉ ଅତିଶୀଘ୍ର ପ୍ରଚଣ୍ଡ କିରଣ ଆଇଲେ ନୟନର ବଳ ନାଶ ହୁଅନ୍ତା । ଅତିଶୀଘ୍ର ଘୋର ଅନ୍ଧକାର ହେଲେ ଲୋକଙ୍କର ବ୍ୟାକୁଳତା ହୁଅନ୍ତା । ପୁଣି ପରମେଶ୍ୱର ଅନୁଗ୍ରହ କରି ଗୋଧୂଳି ଦ୍ୱାରା ଏହି ସବୁ କ୍ଳେଶ ନିବାରଣ କରନ୍ତି ।

---

## ଦିବସ, ରାତ୍ରିର ବିଷୟ ।

ଶିଷ୍ୟ । ଦିବସ ରାତ୍ରିର କାରଣ କି?

ଗୁରୁ । ପ୍ରତିଦିନ ଷାଠିଏ ଦଣ୍ଡରେ ଚକ୍ରର ପ୍ରାୟ ପୃଥିବୀ ଥରେ ବୁଲୁଅଛି ଏକାରଣ ପୃଥିବୀର ଅର୍ଦ୍ଧ ଭାଗରେ ସୂର୍ଯ୍ୟ କିରଣର

ଯୋଗରେ ଦିନ ହେଉଅଛି ଅନ୍ୟ ଭାଗରେ କିରଣ ନ ଥିବାରୁ ରାତ୍ରି ହେଉଅଛି ।

ଶିଷ୍ୟ । ଦିନ ରାତ୍ରିର ବୃଦ୍ଧି ହ୍ରାସର କାରଣ କି ?

ଗୁରୁ । ସୂର୍ଯ୍ୟର ଦକ୍ଷିଣାୟନ, ଉତ୍ତରାୟଣ ସଞ୍ଚାରେ ।

ଶିଷ୍ୟ । ସର୍ବ ଦେଶରେ କି ଦିନ ରାତ୍ରି ଏକ ରୀତି ?

ଗୁରୁ । ନାହିଁ ସର୍ବ ଦେଶ ପୃଥିବୀର ଉତ୍ତର କି ଅବା ଦକ୍ଷିଣ ଭାଗରେ ଯେମନ୍ତ ସୂର୍ଯ୍ୟର ଦୂରବର୍ତ୍ତୀ ହୁଅଇ ସେହି ଅନୁସାରେ ସେହି ଦେଶରେ ଦିନ ରାତ୍ରିର ବିଶେଷ ହୁଅଇ ।

ଶିଷ୍ୟ । ପଶ୍ଚିମ ପୂର୍ବ ରେଖାର ଉପରେ ଯେ ସମସ୍ତ ଦେଶ ଥାଏ ସେ ସ୍ଥାନେ କି ଦିନ ରାତ୍ରିର କିଛି ବିଶେଷ ଅଛି ?

ଗୁରୁ । ନାହିଁ ସେ ସମସ୍ତ ଦେଶରେ ସର୍ବଦା ଦିନ ରାତ୍ରି ସମାନ ।

ଶିଷ୍ୟ । ଯେଉଂ ଦେଶ ଉତ୍ତର କି ଦକ୍ଷିଣ କେନ୍ଦ୍ରରେଁ ଅଛି ତହିଁରେଁ ଦିନ ରାତ୍ରିର କି ବିଶେଷ ?

ଗୁରୁ । ସେ ସମସ୍ତ ଦେଶରେ ବରଷର ମଧ୍ୟରେ କେବଳ ଏକ ଦିନ ଏକ ରାତ୍ରି ହୁଅଇ ଯେହେତୁ ସେଠାରେ ଛଅ ମାସ ସୂର୍ଯ୍ୟର ପ୍ରକାଶ ହୋଏ ପୁଣି ଅନ୍ୟ ଛଅ ମାସରେ ସୂର୍ଯ୍ୟର ପ୍ରକାଶ ନାହିଁ ।

ଶିଷ୍ୟ । ସୂର୍ଯ୍ୟ କି ଏକ ସମୟରେ ସର୍ବ ଦେଶରେ ଉଦୟ ଅସ୍ତ ପ୍ରାପ୍ତ ହୁଅଇ ?

ଗୁରୁ । ସୂର୍ଯ୍ୟ ପୂର୍ବ ଦିଗରେ ଉଦିତ ପଶ୍ଚିମ ଦିଗରେ ଅସ୍ତଗତ ହୁଅଇ ଏନିମନ୍ତେ ଯେଉଂ ସମସ୍ତ ସ୍ଥାନ ପୂର୍ବ ଦିଗରେ ଅଛି ସେହି ଦେଶରେ ସୂର୍ଯ୍ୟ ପ୍ରଥମରେ ପ୍ରକାଶ ହୁଅଇ ତହିଁ ଉତ୍ତାରେ କ୍ରମଶଃ ପଶ୍ଚିମ ଦିଗ ପ୍ରକାଶ ହୋଏ । ଏହି କାରଣ ଓଡିଶା ଦେଶରେ ଯେତେବେଳେ ଦୁଇ ପ୍ରହର ଦିନ ହୁଅଇ ତେତେବେଳେ ଇଙ୍ଗ୍ଲାଣ୍ଡ ଦେଶରେ ପ୍ରାତଃକାଳ ହୁଅଇ । ଆଉ ଏହି ଦେଶରେ ଯେତେ-

ବେଳେ ସୂର୍ଯ୍ୟ ଅସ୍ତଗାମୀ ହୁଅଇ ତେତେବେଳେ ଅନ କୌଣସି ପଶ୍ଚିମ ଦେଶରେ ତାହାଁର ଉଦୟ ହୁଅଇ ।

---

## ଛଅ ଋତୁର ବିଷୟ ।

ଶିଷ୍ୟ । ଗ୍ରୀଷ୍ମ ବର୍ଷାଦି ଛଅ ଋତୁର କାରଣ କି?

ଗୁରୁ । ସୂର୍ଯ୍ୟର ଦକ୍ଷିଣାୟନ, ଉତ୍ତରାୟଣ ।

ଶିଷ୍ୟ । ସୂର୍ଯ୍ୟତ ନିଶ୍ଚଳ, ଏହା କିରୂପେ ହେବାକୁ ପାରଇ?

ଗୁରୁ । ସୂର୍ଯ୍ୟ ଭ୍ରମଣ କରଇ ଏ ସାଧାରଣ କଥା ପୁଣି ଏହି ନିଶ୍ଚୟ ଯେ ପୃଥିବୀ ଚଳଇ । ସୂର୍ଯ୍ୟର ଅଭିମୁଖେ ପୃଥିବୀର ଗତି ବିଶେଷ ହେତୁରୁ କିଅବା ବକ୍ରଭାବରେ ସୂର୍ଯ୍ୟକୁ ପୃଥିବୀର ବେଷ୍ଟନ କରିବାର ହେତୁରୁ ଋତୁର ପ୍ରଭେଦ ହୁଅଇ ।

ଶିଷ୍ୟ । କିନିମନ୍ତେ ଋତୁର ବିଶେଷ ହୁଅଇ?

ଗୁରୁ । ସବୁ ଲୋକଙ୍କର ହିତର୍ଥ ନିମନ୍ତେ, ବୃକ୍ଷାଦି ବଢାଇବାର, ଫଳବାନ କରିବାର ପାଇଁ ଋତୁ ବିଶେଷ ହୁଅଇ ।

ଶିଷ୍ୟ । ଯେବେ ଶୀତକାଳ ନ ଥାନ୍ତା ତେବେ ଆମ୍ଭମାନଙ୍କର ଭଲ ହୁଅନ୍ତା କି ନାହିଁ?

ଗୁରୁ । ତାହା ନୋହେ ଯେହେତୁ ଶୀତକାଳରେ ଆମ୍ଭମାନଙ୍କର, ପୃଥିବୀର ଅନେକ ଉପକାର ହୁଅଇ । ଦେଖ ତାହା ଦ୍ୱାରା ଆମ୍ଭମାନଙ୍କର ଶରୀର ସୁସ୍ଥ ଥାଏ, ପୃଥିବୀ ଫଳନ୍ତା ହୁଅଇ । ପୁଣି ଏହାର ବିନୁ ଯେତେବେଳେ ଏହି ଦେଶରେ ଶୀତକାଳ ହୁଅଇ ତେତେବେଳେ ଦକ୍ଷିଣ ଦିଗରେ ଯେ ସମସ୍ତ ଦେଶ ତହିଁରେ ଗ୍ରୀଷ୍ମକାଳ ହୁଅଇ । ଆମ୍ଭମାନଙ୍କର ଏମନ୍ତ ଲୋଭ କରିବା ଅନୁଚିତ ଯେ ଈଶ୍ୱରଙ୍କର ଅନୁଗ୍ରହ କେବଳ ଆମ୍ଭେମାନେ କି ପାଇବା?

ଶିଷ୍ୟ । ପୁଣି ଋତୁର ମଧ୍ୟରେ ଯେ ବସନ୍ତକାଳ ତହିଁରେ ଆମ୍ଭର ବଡ ତୁଷ୍ଟି ।

ଗୁରୁ । ତୁମ୍ଭେ ଯେ ତହିଁରେ ସନ୍ତୋଷ ହୁଅ ତାହାର କାରଣ କିଛି ଜାଣ? ତାହାର କାରଣ ଏହି ଯେ ତୁମ୍ଭେ ଶୀତକାଳ ଭୋଗ କରି ଦୁଃଖର ଅବସାନେ ସୁଖ ପ୍ରାପ୍ତ ହୁଅ ଯେମନ୍ତ ମନୁଷ୍ୟର ରୋଗ ହେଲେ ତହିଁ ଉତ୍ତାରେ ସୁସ୍ଥ ହୋଇ ସୁଖ ବୋଧ ହୁଅଇ । ବସନ୍ତ କାଳ ଲୋକଙ୍କର ଭରସା ସମୟ. ଏହିହେତୁ ଅତି ସୁଖଜନକ ହୁଅଇ । ଦେଖ ଯୋ ସମସ୍ତ ମ୍ଳାନ ବସ୍ତୁ ଶୀତକାଳରେ ମୃତ୍ୟୁର ତୁଲ୍ୟ ହୋଇ ଥାଏ ସେ ବସନ୍ତ ସମୟରେ ପ୍ରଫୁଲ୍ଲ, ସତେଜ ହୁଅଇ ପୁଣି ଆଶା ଜନ୍ମାଏ ଯେ ଉତ୍ତର ୨ ଫଳ ଫଳିବ ।

ଶିଷ୍ୟ । ଗ୍ରୀଷ୍ମକାଳ, ଶୀତକାଳରେ ସମସ୍ତ ଦେଶରେ କି ଗ୍ରୀଷ୍ମ, ଶୀତ ସମାନ?

ଗୁରୁ । ନାହିଁ ଏହି ଦେଶର ଶୀତ ସମୟର ଗ୍ରୀଷ୍ମରୁ ଇଙ୍ଗ୍ଲଣ୍ଡ ଦେଶରେ ଗ୍ରୀଷ୍ମକାଳ ମଧ୍ୟାହ୍ନର ଗ୍ରୀଷ୍ମ ଅଧିକ ନୋହେ ।

---

ସ୍ଥିରବାୟୁ, ସାମାନ୍ୟବାୟୁ ଇତ୍ୟାଦି ବିଷୟ ।

ଶିଷ୍ୟ । ସ୍ଥିରବାୟୁ ବିଷୟରେ ଆମ୍ଭେ ଅନେକ ଶୁଣିଅଛୁଁ ପୁଣି ସେ ଅଦୃଶ୍ୟ ବସ୍ତୁ ତାହା କି ଆମ୍ଭେ ଜାଣିବାକୁ ପାରିବା?

ଗୁରୁ । ହଁ, ସ୍ଥିରବାୟୁ ଏକ ଦ୍ରବମୟ ବସ୍ତୁ ସେ ଯେତେବେଳେ ଜ୍ୱଳଇ ତେତେବେଳେ ଆନ ବସ୍ତୁକୁ ଚଳାଏ । ତାହାର ତିନ ଗୁଣ ଅର୍ଥାତ୍ ତୀକ୍ଷ୍ଣତା, ନିର୍ମଳତା, ସୂକ୍ଷ୍ମତା ଯେତେବେଳେ ସଂକୀର୍ଣ୍ଣ କରା ଯାଏ ତେତେବେଳେ ଦାରୁ ତୁଲ୍ୟ ତାହାର ଆଶ୍ଚର୍ଯ୍ୟ ଶକ୍ତି ହୁଅଇ ।

ଶିଷ୍ୟ । ସ୍ଥିରବାୟୁର ଆଉ କୌଣସି,ଗୁଣ ଅଛି କି ନାହିଁ?

ଗୁରୁ । ତାହା ଦ୍ୱାରା ଶବ୍ଦ ଉତ୍ପନ୍ନ ହୁଁଅଇ, ତାହା ବିନୁ ଆମ୍ଭେମାନେ ଶୁଣିବାକୁ ନ ପାଇ । ସ୍ଥିରବାୟୁ ନ ହେଲେ କୌଣସି ରାଗ ରାଗିଣୀ ହୁଅନ୍ତା ନାହିଁ, ଘ୍ରାଣ ହୁଅଇ ନାହିଁ, ଆମ୍ଭେମାନେ ଏକକୁ-ଅରେକ କୌଣସି କଥୋପକଥନ କରିବାକୁ ହୁଅନ୍ତା ନାହିଁ ।

ଯହିଁରେ ସୂର୍ଯ୍ୟର କିରଣ ପ୍ରକାଶ ପାଏ ସ୍ଥିରବାୟୁର ମଧ୍ୟରେ ଏମନ୍ତ କଣିକା ଅଛି ଏନିମନ୍ତେ ଆକାଶମଣ୍ଡଳେ ସ୍ଥିରବାୟୁ ନ ହେଲେ ଯେ ସ୍ଥାନରେ ସୂର୍ଯ୍ୟ ଅଛି ସେହି ସ୍ଥାନ କେବଳ ଆଲୁଅ ହୁଅନ୍ତା ପୁଣି ମଧ୍ୟାହ୍ନକାଳରେ ଗ୍ରହ ନକ୍ଷତ୍ରାଦି ଦୃଶ୍ୟ ହୁଅନ୍ତା ।

ଶିଷ୍ୟ । ସ୍ଥିରବାୟୁ କେତେ ପ୍ରକାର ?

ଗୁରୁ । ସ୍ଥିରବାୟୁ ଦୁଇ ପ୍ରକାର ଅର୍ଥାତ୍ ପ୍ରାଣଦାୟକ, ପ୍ରାଣନାଶକ ପୁଣି ସ୍ଥିରବାୟୁର ଶହେ ଅଂଶରେ ପ୍ରାଣଦାୟକର ୨୧ ଅଂଶ, ପ୍ରାଣନାଶକର ୭୯ ଅଂଶ ଅଛି ।

ଶିଷ୍ୟ । ଜଳଠାରୁ ସ୍ଥିରବାୟୁ କେତେ ଉଶ୍ୱାସ ?

ଗୁରୁ । ୮୧୬ ଗୁଣେ ସ୍ଥିରବାୟୁ ଉଶ୍ୱାସ ଅଛି ।

ଶିଷ୍ୟ । ବତାସ କି ?

ଗୁରୁ । ଯେତେବେଳେ ସ୍ଥିରବାୟୁ ଚଳଇ ସେତେବେଳେ ବତାସ କୁହା ଯାଏ ।

ଶିଷ୍ୟ । ସ୍ଥିରବାୟୁ ଯେ ଚଳଇ ତାହାର କାରଣ କି ?

ଗୁରୁ । ଗ୍ରୀଷ୍ମ, ଶୀତ ସ୍ଥିରବାୟୁରେ ଅଛି ସେ କାରଣ ତାହା ଚଳଇ । ଗ୍ରୀଷ୍ମରେ ସ୍ଥିରବାୟୁ ବିସ୍ତାର ହୁଅନ୍ତି, ଶୀତରେ ସଂକୀର୍ଣ୍ଣ କରା ଯାଏ । ବିଶେଷ ବତାସ ଯେ କି କାରଣ ହୁଅଇ ତାହା କେହି ନିଶ୍ଚୟ କହିବାକୁ ପାରଇ ନାହିଁ । ପଣ୍ଡିତମାନେ କହନ୍ତି ଯେ ସମୟରେ ଗ୍ରୀଷ୍ମରେ ସ୍ଥିରବାୟୁ ତୀକ୍ଷ୍ଣ ହୁଅଇ ତେବେ ସ୍ଥିରବାୟୁର ଯେଉଁ ଅଂଶ ଏମନ୍ତ ତୀକ୍ଷ୍ଣ ନୋହେ ସେ ସେହି ତୀକ୍ଷ୍ଣର ଭାଗ ମଧ୍ୟରେ ବେଗେ ପ୍ରବେଶ ହେବାରୁ ବିଶେଷ ବତାସ ଚଳଇ ।

---

ଶିଷ୍ୟ । ବତାସର କି ବିଶେଷ ନାମ ଅଛି ?

ଗୁରୁ । ଯେ ଦିଗରୁ ବତାସ ବହଇ ସେ ଦିଗର ନାମ ସେ ପାଏ ଯେମନ୍ତ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ବତାସ ହୁଅଇ ।

ଶିଷ୍ୟ । କିରୂପରେ ଏହି ସମସ୍ତ ଦିଗ ନିରୂପଣ କରିବାକୁ ପାରିବା ?

ଗୁରୁ । ପ୍ରାତଃକାଳରେ ସୂର୍ଯ୍ୟର ଆଡେ ଠିଆ ହୋଇଲେ ତୁମ୍ଭର ସମ୍ମୁଖ ଭାଗେ ପୂର୍ବଦିଗ ପଶ୍ଚାତ ଭାଗେ ପଶ୍ଚିମଦିଗ ଦକ୍ଷିଣ ଭାଗେ ଦକ୍ଷିଣଦିଗ ବାମ ଭାଗେ ଉତ୍ତରଦିଗ ହୁଅଇ । ଅଥବା ରାତ୍ରିବେଳେ ଯେବେ ଧ୍ରୁବ ତାରା ସମ୍ମୁଖରେ ଠିଆ ହେବ ତେବେ ତୁମ୍ଭର ଅଗ୍ରତେ ଉତ୍ତରଦିଗ ପଶ୍ଚାତ୍ ଦକ୍ଷିଣଦିଗ ଡୁଞ୍ଜୁଣିଅଡେ ପୂର୍ବଦିଗ ଡେବରି ଆଡେ ପଶ୍ଚିମଦିଗ ହୁଅଇ ।

ଶିଷ୍ୟ । ବତାସର କି ଫଳ ହୁଅଇ ?

ଗୁରୁ । ପ୍ରାୟ ଅସଂଖ୍ୟ ଫଳ ହୁଅଇ । ଦେଖ ସେ ସ୍ଥିରବାୟୁକୁ ପରିଷ୍କାର କରଇ । ଗ୍ରୀଷ୍ମର ଉଣା କରାଏ । ଓଦା ଗୃହ, ପ୍ଲାବିତ ଭୂମି ଶୁଷ୍କ କରଇ । ଭ୍ରମାଦି ଦୂର କରଇ । ଉଚିତ ସମୟରେ ବୃଷ୍ଟି ଆଦି ଆଣାଏ । ଆକାଶ ନିର୍ମଳ କରଇ । ବାଣିଜ୍ୟ କର୍ମରେ ସମୁଦ୍ରରେ ବୋଇତାଦି ଗମନର ଉପକାର କରଇ ।

ଶିଷ୍ୟ । ବତାସ କେତେ ଶୀଘ୍ର ଗମନ କରଇ ?

ଗୁରୁ । ଅଢାଇ ଦଣ୍ଡର ମଧ୍ୟରେ ୧ କୋଶ ଅବଧି ୬୦ କୋଶ ପର୍ଯ୍ୟନ୍ତେ ଗମନ କରିବାକୁ ପାରଇ । ଏକାଳର ମଧ୍ୟରେ ଯେବେ କେବଳ କୋଶେ ଚଳଇ ତେବେ ବତାସ ଅତି ଧୀର ବହଇ ପ୍ରାୟ ବୋଧ ହୁଅଇ ନାହିଁ । ପୁଣି ଦଣ୍ଡର ମଧ୍ୟରେ ଯେବେ ୬୦ କୋଶ ଚଳଇ ତେବେ ବଡ ତୋଫାନ ହୁଅଇ । ସାଧାରଣ ମଧ୍ୟମ ବତାସ ଅଢାଇ ଦଣ୍ଡରେ ୧୫ କୋଶ ଚଳଇ । ଯେ ନିର୍ଘାତ ବତାସ ବେଗେ ବୃକ୍ଷ ଘର ଇତ୍ୟାଦି ନଷ୍ଟ କରଇ ସେ ଏକ ଦଣ୍ଡରେ ଶତେ କୋଶ ଗମନ କରଇ ।

ଶିଷ୍ୟ । ବତାସ କେତେ ପ୍ରକାର ହୁଅଇ ?

ଗୁରୁ । ତିନି ପ୍ରକାର ଏକ ସାଧାରଣ ବତାସ ଯେ ସର୍ବଦା

ବହଇ । ସ୍ଥିତାସ୍ଥ ଯେ ବିଶେଷ ବତାସ କେତେ ମାସରେ ବହଇ । ଭୂତାସ୍ଥ ଯେ ବତାସ ସମୁଦ୍ରର କିଅବା ପୃଥ୍ୱୀର ସମସ୍ତ ବିଶେଷରେ ଉପସ୍ଥିତ ହୁଅଇ ।

ଶିଷ୍ୟ । ବତାସ ବିଶେଷର କି॰ ଗୁଣ ଅଛି?

ଗୁରୁ । ଦେଶ ବିଶେଷେ ବତାସର ବିଶେଷ ଗୁଣ ଅଛି ଏହି ଓଡ଼ିଶା ଦେଶରେ ଦକ୍ଷିଣ ବତାସ ମଧ୍ୟମ । ଉତ୍ତର ବତାସ ଶୀତଳ । ପୂର୍ବର ବତାସ ରୋଗଦାୟକ, ପଶ୍ଚିମ ବତାସ ବଡ ଉଷ୍ଣ, ରୁକ୍ଷ ।

ଶିଷ୍ୟ । ଏହି ସମସ୍ତ ଗୁଣର କାରଣ କି?

ଗୁରୁ । ଦକ୍ଷିଣ ବତାସ ଯେ ମଧ୍ୟମ ତାହାର କାରଣ ଏହି ଯେ ଦକ୍ଷିଣ ମହାସାଗରଠାରୁ ଆସଇ । ଉତ୍ତର ବତାସ ଯେ ଶୀତଳ ତାହାର କାରଣ ଏହି ଯେ ହିମସାଗରରୁ କିଅବା ପ୍ରାୟ ସୂର୍ଯ୍ୟରହିତ ହିମାଳୟ ଦେଶରୁ ଆସଇ । ପୂର୍ବର ବତାସ ଯେ ରୋଗଦାୟକ ତାହାର କାରଣ ଏହି ଯେ ସୁନ୍ଦରବଣ ମାର୍ଗରେ ଆସଇ । ପଶ୍ଚିମ ବତାସ ଯେ ଉଷ୍ଣ, ରୁକ୍ଷ ତାହାର କାରଣ ଏହି ଯେ ଅତି ଉଷ୍ଣ, ରୁକ୍ଷ ଭୂମି ମାର୍ଗରେ ବହି ଆସଇ ।

ଶିଷ୍ୟ । ନିର୍ଘାତ ବାୟୁ କିହେତୁ ହୁଅଇ?

ଗୁରୁ । ଦୁଇ ବତାସ ସମ୍ମୁଖାସମ୍ମୁଖି ହୋଇ ମହାବେଗବାନ ହୋଇଲେ କିଅବା ଅକସ୍ମାତ ସ୍ଥିତବାୟୁ ବିସ୍ତାରିତ ହେଲେ ନିର୍ଘାତ ବାୟୁ ଜନ୍ମଇ । ପୁଣି ତୋଫାନ ଏହିଉପରେ ହୁଅଇ ।

---

## ଭାପ, ମେଘ ବିଷୟ ।

ଶିଷ୍ୟ । ଭାପ, ମେଘ କି?

ଗୁରୁ । ଭାପ ଅତି ସୂକ୍ଷ୍ମ ଅଦୃଶ୍ୟ ଜଳଯୁକ୍ତ ପରମାଣୁ ଯେ ଆକାଶରେ ଉଠଇ ଯେତେବେଳେ ଏକତ୍ର ସଂକୀର୍ଣ୍ଣ ହୋଇ ଦୃଶ୍ୟ ହୁଅଇ ସେତେବେଳେ ତାହାକୁ ମେଘ କୁହାଯାଏ ।

ଶିଷ୍ୟ । ଏହି ଭାପ କେଉଁଠାରୁ ଉଠଇ?

ଗୁରୁ । ସୂର୍ଯ୍ୟର ତାପରେ ଭୂମିରୁ ଉଠଇ, ଲଘୁ ହେବାରୁଁ ଆକାଶରେ ଥାଏ ।

ଶିଷ୍ୟ । ଭାପ ଆକାଶମଣ୍ଡଳରେ ଥାଏ ଏଥିରେ ଫଳ କି?

ଗୁରୁ । ସ୍ଥିରବାୟୁ ଯେତେବେଳେ ଉଷ୍ଣ ହୁଅଇ ତେତେବେଳେ ତାହାକୁ ଶୀତଳ କରଇ, ଯେତେବେଳେ ସଂକୀର୍ଣ୍ଣ ହୋଏ ତେତେବେଳେ ଆମ୍ଭମାନଙ୍କୁ ସ୍ପର୍ଶ କରଇ, ପୃଥିବୀରଁ ଉଷ୍ଣତା ଦୂର କରଇ ଯହିଁରେ ମୃତ୍ତିକା ନ ଫାଟଇ ପୁଣି ଉପକାରକ ବୃଷ୍ଟି ଜନ୍ମାଏ ।

ଶିଷ୍ୟ । ଭାପରେ କି ଲୋକଙ୍କର କିଛି ହାନି ହୁଅଇ?

ଗୁରୁ । ହଁ। ସମୟ ବିଶେଷରେ ହାନି ହେବାକୁ ପାରଇ ଯେହେତୁ ପ୍ରାୟ ସମସ୍ତେ ଅନୁମାନ କରନ୍ତି ଯେ ତାହାର ଦ୍ଵାରା ଭୂମିକମ୍ପ ହୁଅଇ । ଅନୁମାନର କାରଣ ଏହି ଯେ ପୃଥିବୀର ମଧ୍ୟରେ ସୁରାଖାରି, ଗନ୍ଧକମୟ ଭାପ ଅଛି ଏ ଭାପରେ ଅଗ୍ନି କଣା ପ୍ରବେଶ ହେଲେ ପ୍ରଜ୍ୱଳିତ ହୋଇ ବେଗେ ଗମନ କଲେ ଭୂମିକମ୍ପ ହୁଅଇ । କେବେ୨ ପୃଥିବୀର ଅନ୍ତରସ୍ଥ ବାୟୁ କିଅବା ଭାପ ବିସ୍ତାର ହେଲେ ଭୂମିକମ୍ପ ହୁଅଇ ।

ଶିଷ୍ୟ । ଉପରକୁ କେତେ ଦୂର ପର୍ଯ୍ୟନ୍ତେ ମେଘ ଉଠଇ?

ଗୁରୁ । ପୃଥିବୀର ଉପରରେ ଅର୍ଦ୍ଧ କୋଶଠାରୁ ଦୁଇ କୋଶ ପର୍ଯ୍ୟନ୍ତେ ଉଠଇ ।

ଶିଷ୍ୟ । ମେଘର ମଧ୍ୟରେ ଯେ ନାନା ପ୍ରକାର ବର୍ଣ୍ଣ, ଆକାର ଦେଖା ହୁଅଇ ତାହାର କାରଣ କି?

ଗୁରୁ । ସେହି ସବୁ ବର୍ଣ୍ଣ ସୂର୍ଯ୍ୟ କିରଣରେ ଉତ୍ପନ୍ନ ହୁଅଇ ପୁଣି ମେଘ ଯେମନ୍ତ ନିବିଡ, ସୂର୍ଯ୍ୟର ନିକଟବର୍ତ୍ତି ହୁଅଇ ତେମନ୍ତ ବିଶେଷ ବର୍ଣ୍ଣ ହୁଅଇ ।

ଶିଷ୍ୟ । ଆକାଶ ପ୍ରାୟ ସର୍ବଦା ନୀଳବର୍ଣ୍ଣ ଦେଖା ଯାଏ ତାହାର କାରଣ କି?

ଗୁରୁ । କାରଣ ଏହି ଯେ ଭୂମି ମଧ୍ୟରେ ବାୟୁ ଅଛି ଏନିମନ୍ତେ ସବୁ ବର୍ଣ୍ଣରୁ ସୂର୍ଯ୍ୟ କିରଣର ନୀଳବର୍ଣ୍ଣ ପ୍ରକାଶ ପାଏ ।

---

## ବୃଷ୍ଟିର ବିଷୟ ।

ଶିଷ୍ୟ । ବୃଷ୍ଟିର କାରଣ କି?

ଗୁରୁ । ଯେତେବେଳେ ବାୟୁ ଭାପରେ ଏମନ୍ତ ପରିପୂର୍ଣ୍ଣ ଯେ ଆଉ କିଛି ଧରିବାକୁ ପାରଇ ନାହିଁ ତେତେବେଳେ ସମସ୍ତ ଭାପ ଏକତ୍ର ହୋଇ ନିଜ ଭାରେ ସକାଶୁ କଣିକାରୂପେ ପଡଇ ତାହାର ନାମ ବୃଷ୍ଟି । ବୃଷ୍ଟି କଣିକାରୂପେ ପଡଲେ ଈଶ୍ୱରଙ୍କର କେମନ୍ତ ବଦାନ୍ୟତା ପ୍ରକାଶ ପାଏ ଯେହେତୁ ଯେବେ ମୁଷଳଧାରେ ବୃଷ୍ଟି ପଡନ୍ତା ତେବେ ବୃକ୍ଷ ଲତା ପ୍ରଭୃତିର ମୂଳର ମାଟି ଧୋଇ ଯାଇ ବୃକ୍ଷାଦି ନଷ୍ଟ ହୁଅନ୍ତା ଏହିରୂପେ ଜଗତର ଅନେକ କ୍ଷତି ହୁଅନ୍ତା ।

ଶିଷ୍ୟ । ବୃଷ୍ଟିରୁ ଆମ୍ଭମାନଙ୍କର ଉପକାର କି?

ଗୁରୁ । ବୃଷ୍ଟି ପୃଥିବୀକୁ ସଫଳ କରଇ, ମ୍ଳାନ ଶସ୍ୟାଦିକୁ ସଜୀବ କରଇ । ଗ୍ରୀଷ୍ମକାଳରେ ଉତ୍ତପ୍ତ ବାୟୁକୁ ସୁଶୀତଳ କରଇ । ପୁଣି ଝର, ନଦନଦୀ ସବୁ ଏମନ୍ତ ଜନ୍ମାଏ ଯେ ପ୍ରାୟେ କେତେବେଳେ ଜଳାଭାବ ହୁଅଇ ନାହିଁ ।

ଶିଷ୍ୟ । ବୃଷ୍ଟିର ଆସିବାର କି କିଛି ଚିହ୍ନ ଅଛି?

ଗୁରୁ । ହଁ ଅଛି ବତାସରୁ, ପକ୍ଷିରୁ, ପୁଷ୍ପାଦିରୁ ବୃଷ୍ଟିର ଆଗମନ ଚିହ୍ନା ଯାଏ ।

ଶିଷ୍ୟ । ବରଷର ମଧ୍ୟରେ ପୃଥିବୀର ଉପରେ କେତେ ବୃଷ୍ଟି ହୁଅଇ?

ଗୁରୁ । ବରଷର ମଧ୍ୟରେ ଉର୍ଦ୍ଧ୍ୱ ପ୍ରାୟ ୧୦୦ ଯବ ପରିମାଣେ ପୃଥିବୀରେ ବୃଷ୍ଟି ହୁଅଇ ।

ଶିଷ୍ୟ । ବରଷରେ ପୃଥିବୀର ଭୂମି ହୋଇ କେତେ ଜଳ ଉପରେ ଉଠଇ ?

ଗୁରୁ । ପ୍ରାୟ ୧୬୭ ଯବ ପରିମାଣେ ଜଳ ଉଠଇ ।

ଶିଷ୍ୟ । ମେଘଧନୁ କାହିଁରେ ଉତ୍ପନ୍ନ ହୁଅଇ ?

ଗୁରୁ । ଯେତେବେଳେ ବୃଷ୍ଟି ପଡ଼ଇ ତେତେବେଳେ ତାହାର କଣିକାରେ ସୂର୍ଯ୍ୟର କିରଣ ସଂଯୁକ୍ତ ହୁଅଇ ତହିଁରେ ଏହି ଧନୁର ଆକାର ଦୃଷ୍ଟି ହୁଅଇ ।

ଶିଷ୍ୟ । ତାହାର ନାନା ବର୍ଣ୍ଣ କିରୂପରେ ଉତ୍ପନ୍ନ ହୁଅଇ ?

ଗୁରୁ । ସୂର୍ଯ୍ୟ କିରଣରୁ ହୁଅଇ । ଯେ ଜଳ କଣିକାରେ ସୂର୍ଯ୍ୟ କିରଣ ପ୍ରବେଶ କରି କିଞ୍ଚିତ ନିର୍ଗତ ହୁଅଇ ତାହାର ରକ୍ତବର୍ଣ୍ଣ ଦେଖା ଯାଏ, ଯେଉଁ କଣିକାରେ କିରଣ ପ୍ରବିଷ୍ଟ ହୋଇ ଅଧିକ ନିର୍ଗତ ହୁଅଇ ସେହି କଣିକା ନୀଳବର୍ଣ୍ଣ ହୁଅଇ ଏହିରୂପେ କଣିକା ନାନାବର୍ଣ୍ଣ ହୁଅଇ ।

---

## ହିମାଦିର ବିଷୟ ।

ଶିଷ୍ୟ । ଶୀତ, ହିମ କିପ୍ରକାରେ ଆସଇ ?

ଗୁରୁ । ଶୀତ, ହିମ ଅନେକ ସମୟରେ ବତାସରୁ ଉତ୍ପନ୍ନ ହୁଅଇ ବିଶେଷରେ ଉତ୍ତର ଦକ୍ଷିଣ କେନ୍ଦ୍ରଠାରୁ ବାୟୁ ବହିଲେ ଅଧିକ ହୁଅଇ । ପୁଣି ଯେମନ୍ତ ବତାସ ତେମନ୍ତ ଶୀତ, ହିମ ଜନ୍ମଇ ।

ଶିଷ୍ୟ । ଜଳ ଜମାଟ କିପ୍ରକାରେ ହୁଅଇ ?

ଗୁରୁ । ଅଧିକ ଶୀତରେ, ଯେହେତୁ ଶୀତ ଜଳକୁ ସଂକୀର୍ଣ୍ଣ କରି କଠିଣ କରଇ ।

ଶିଷ୍ୟ । ଅତିଶୟ ଶୀତର ପ୍ରୟୋଜନ କି?

ଗୁରୁ । ଅତିଶୟ ଶୀତ ବଡ ଉପକାରକ ଦେଖ ସ୍ଥିରବାୟୁକୁ ପରିଷ୍କାର କରଇ । ମନୁଷ୍ୟର ଶରୀରକୁ ନିରସ କରି ସବଳ କରଇ । ଭୂମି ବିଶେଷକୁ କୋମଳ, ସଫଳ କରଇ । ଅନେକ ହିଂସ୍ରକ କୀଟକୁ ନଷ୍ଟ କରଇ । ପୁଣି ଅନ୍ୟ ଉପକାର କରଇ ।

ଶିଷ୍ୟ । ବରଫ କି ବସ୍ତୁ, ତହିଁରେ ଫଳ କି?

ଗୁରୁ । ବରଫ କେବଳ ବିକୃତ ଜଳ । ସେ ଶୁକ୍ଳବର୍ଣ୍ଣ, ଆକାଶରୁ ସୁନ୍ଦରରୂପେ ପଡଇ । ତାହା ବସ୍ତ୍ର ପରି ଏମନ୍ତ ଶସ୍ୟାଦିକ ରକ୍ଷା କରଇ ଯେ ଅତିଶୟ ଶୀତ ଭୂମିର ମଧ୍ୟରେ ଯାଇ ବୀଜର ନାଶ କରିବାକୁ ନ ପାରଇ । କର୍ପାସର ତୁଳା ତାହାର ବର୍ଣ୍ଣ ।

ଶିଷ୍ୟ । ଆକାଶରୁ ଯେ ଶିଳାପଥର ପଡଇ ସେ କି?

ଗୁରୁ । ଜଳକଣିକା ଶୀତରେ ସଂକୀର୍ଣ୍ଣ ହୋଇଲେ ଶିଳା ଅର୍ଥାତ୍ କୁଆପଥର ହୁଅଇ ।

ଶିଷ୍ୟ । ବରଫ, ଶିଳାର ବିଶେଷ କି?

ଗୁରୁ । ଶୀତରେ କଣିକା ହେବାର ପୂର୍ବରେ ଯୋ ମେଘ ଶୀତ ହେତୁରୁ କଠିଣ ହୁଅଇ ସେହି ମେଘ ବରଫ ହୋଇ ପଡଇ ପୁଣି କଣିକା ଏକତ୍ର ହୋଇ ଶୀଘ୍ର କଠିଣ ହେଲେ ଶିଳାକାରରେ ପଡଇ ।

ଶିଷ୍ୟ । ଶିଶିର, କୁହୁଡ କି?

ଗୁରୁ । ଯୋ ବାଷ୍ପ ମୃତ୍ତିକାରୁ ଉଠଇ ତାହା ଶୀତରେ ସଂକୀର୍ଣ୍ଣ ହୋଇ ଏରୂପ ଦେଖା ଯାଏ ତାହାର ଫଳ ଏହି ଯେ ନିର୍ଜ୍ଜଳ ସମୟରେ କ୍ଷୁଦ୍ର, ମ୍ଳାନ ବୃକ୍ଷକୁ ନବୀନ କରଇ ।

ଶିଷ୍ୟ । ହିମକାଳରେ ଯେ କଣିକାକାର ଶିଳା ପଡଇ ତାହାର କାରଣ କି?

ଗୁରୁ । ଶୀତରେ ଭାଷ୍ପ କଠିଣ ହୋଇ ବରଫର ନ୍ୟାୟ ଆକାଶରୁ ସୁନ୍ଦରରୂପେ ପଡ଼ଇ ।

---

ମେଘର ଗର୍ଜ୍ଜନ, ବିଜୁଳି ବିଷୟ ।

ଶିଷ୍ୟ । ମେଘର ବିଜୁଳି, ଗର୍ଜ୍ଜନ କିପ୍ରକାରେ ହୁଅଇ ?

ଗୁରୁ । ମେଘର ମଧ୍ୟରେ ଅଗ୍ନିମୟ ବସ୍ତୁ ଅଛି ଯେତେବେଳେ ଏହି ଅଗ୍ନିମୟ ବସ୍ତୁ ଏକ ମେଘରୁ ଅନ୍ୟ ମେଘରେ ପ୍ରବେଶ ହୋଏ ତେତେବେଳେ ବିଜୁଳି ହୁଅଇ, ପ୍ରବେଶ କରିବାମାତ୍ରେ ବାରୁଦର ନ୍ୟାୟ ପ୍ରଜ୍ୱଳିତ ହୋଇ ମହାଶବ୍ଦ କରଇ । ସେହି ଶବ୍ଦର ନାମ ମେଘଗର୍ଜ୍ଜନ ।

ଶିଷ୍ୟ । ବିଜୁଳିର ଆମ୍ଭମାନଙ୍କର ଉପକାର କି ?

ଗୁରୁ । ମନ୍ଦ ଭାଷ୍ପ ବିନାଶ କରଇ, ବାୟୁକୁ ଏଣେତେଣେ ଚଳାଏ ତହିଁରେ ବାୟୁ ନିର୍ମ୍ମଳ ହୁଅଇ, ବୃଷ୍ଟି ଜନ୍ମଇ ପୁଣି ଗ୍ରୀଷ୍ମକୁ ଊଣା କରଇ ।

ଶିଷ୍ୟ । ମେଘ ଗର୍ଜ୍ଜନର କାରଣ କି ?

ଗୁରୁ । ଯେତେବେଳେ ସୁରା, ଗନ୍ଧକମୟ ବସ୍ତୁର ଭାଷ୍ପ ସୂର୍ଯ୍ୟର ତାପ ଦ୍ୱାରା ପୃଥିବୀରୁ ଉତ୍ଥିତ ହୋଇ ମେଘରେ ଯୁକ୍ତ ହୁଅଇ ତେତେବେଳେ ଏହି ପ୍ରଜ୍ୱଳିତ ହୋଇ ଛିନ୍ନଭିନ୍ନ ହେଲେ ତାହାର ଗର୍ଜ୍ଜନ ହୁଅଇ । ଆଉ କାରଣ ଏହି ଯେ ଯେତେବେଳେ ବିଜୁଳିର ଦ୍ୱାରା ବାଷ୍ପମୟ ବସ୍ତୁ ଛିନ୍ନଭିନ୍ନ ହୁଅଇ ତେତେବେଳେ ମେଘ ଗର୍ଜ୍ଜନ ହୁଅଇ ।

ଶିଷ୍ୟ । ମେଘର କଠୋର ଗର୍ଜ୍ଜନର କାରଣ କି ?

ଗୁରୁ । ସେ ପ୍ରତିଧ୍ୱନିରେ ଜନ୍ମଇ ।

ଶିଷ୍ୟ । ପ୍ରତିଧ୍ୱନି କିପରେ ହୁଅଇ ?

ଗୁରୁ । ବାୟୁର ଗତିରୁ ଜନ୍ମଇ । କାରଣ ଯେବେ ବାୟୁ ଉଚ୍ଛଳିତ ହୋନ୍ତି, ପର୍ବତାଦିରି ଉପରେ ପଡଇ ତେବେ ପ୍ରତିଧ୍ୱନି ଉତ୍ପନ୍ନ ହୁଅଇ ।

ଶିଷ୍ୟ । ମେଘର ଗର୍ଜନ ଯେବେ କେବଳ ଶବ୍ଦମାତ୍ର ହୁଅଇ ତେବେ ତାହାର ହେତୁରୁ ଆମ୍ଭମାନଙ୍କର ଭୟ କରିବାର କି ଉଚିତ ?

ଗୁରୁ । ତହିଁରେ ଭୟର ବିଷୟ କିଛି ନାହିଁ ଭୟର ବିଷୟ ବିଜୁଳି ପୁଣି ବିଜୁଳି ଯେବେ ଦୂର ହୁଅଇ ତେବେ ତହିଁରେହେଁ ଭୟ ନାହିଁ ।

ଶିଷ୍ୟ । ଅମ୍ଭେ କିରୂପେ ଜାଣି ପାରିବା ଯେ ବିଜୁଳି ଦୂରେ କି ନିକଟ ?

ଗୁରୁ । ବିଜୁଳି ହେଲାଉତ୍ତାରେ ଯେବେ ମେଘଗର୍ଜ୍ଜନ ଅଳ୍ପ ସମୟ ବୋଧ ହୁଅଇ ତେବେ ଜଣାଯାଏ ଯେ ବିଜୁଳି ନିକଟ, କିଛି ଭୟଜନକ । ପୁଣି ବିଜୁଳି ଉତ୍ତାରେ ଯେବେ ଗର୍ଜ୍ଜନ ସମୟ କିଛି ଅଧିକ ବୋଧ ହୁଅଇ ତେବେ ଜଣାଯାଏ ଯେ ବିଜୁଳି ଦୂରେ, ଭୟାନକ ନୋହେ ।

ଶିଷ୍ୟ । ଯେବେ ବିଜୁଳି, ଗର୍ଜନ ଏକ ସମୟରେ ଜନ୍ମଇ ତେବେ ବିଜୁଳି ଉତ୍ତାରୁ ଗର୍ଜନ ଯେ କିଞ୍ଚିତ ବିଳମ୍ବ ହୁଅଇ ତାହାର କାରଣ କି?

ଗୁରୁ । କାରଣ ଏହି ଯେ ଶବ୍ଦଠାରୁ ଆଲୁଅ ଅତିଶୀଘ୍ର ଗମନ କରଇ ସେ ସକାଶେ ଅମ୍ଭମାନଙ୍କର ଚକ୍ଷୁରେ ଆଗେ ତାହାର ଆଲୁଅ ଲାଗଇ ତହିଁଉତ୍ତାରେ କର୍ଣ୍ଣରେ ଶବ୍ଦ ଶୁଣାଯାଏ ।

ଶିଷ୍ୟ । ଆକାଶମଣ୍ଡଳରେ ଶବ୍ଦ କେତେ ଶୀଘ୍ର ଚଳଇ ?

ଗୁରୁ । କିଛି ବାଧା ନ ହେଲେ ଏକ ନିମିଷର ମଧ୍ୟରେ ସାତ ଶ ପଞ୍ଚାଶ ହାତ ଚଳଇ ପୁଣି ଆଲୁଅ ସେହି ଏକ ନିମିଷରେ ଦୁଇ ଲକ୍ଷ କୋଶ ଚଳଇ ।

ଶିଷ୍ୟ । ଆମ୍ଭେ ଶୁଣିଅଛୁଁ ଯେ ବିଜୁଳି, ଗର୍ଜନ ସମୟରେ ବୃକ୍ଷର ତଳକୁ ଯିବାର ଅନୁଚିତ, ଏ କି ସତ୍ୟ ?

ଗୁରୁ । ହଁ, ଯେହେତୁ ବୃକ୍ଷରେ ମଧ୍ୟରେ ଏମନ୍ତ ଏକ ଶକ୍ତି ଅଛି ଯେ ବିଜୁଳିକୁ ଆକର୍ଷଣ କରଇ ଏନିମନ୍ତେ ଯେବେ ଗୃହାଦି ନିକଟେ ନ ଥାଏ ତେବେ ବୃକ୍ଷର ତଳେ ଯିବାରୁ ବାଟରେ କି ଅବା ବିଲ ମଧ୍ୟରେ ରହିବାର ଭଲ ।

ଶିଷ୍ୟ । ଝଡ ସମୟରେ ବିଜୁଳିରେ ଅନେକ ମନୁଷ୍ୟ, ପଶୁ ନଷ୍ଟ ହୁଅଇ, ଲୋକଙ୍କର ଅନ୍ୟ କ୍ଷତ ହୁଅଇ, ତାହାର କାରଣ କି ?

ଗୁରୁ । ମେଘର ମଧ୍ୟରେ ଯେ ଯବକ୍ଷାର, ଗନ୍ଧକମୟ ବସ୍ତୁ ଥାଏ ତାହା ଯେବେ ଶୁଷ୍କ, ଲଘୁ ହୁଅଇ ତେବେ ଆକାଶର ଊର୍ଦ୍ଧ୍ୱଭାଗେ ଉଠଇ ସେଠାରେ ପ୍ରଜ୍ୱଳିତ ହୋଇ ବିଜୁଳି ହେଲେ କିଛି ହାନି କରଇ ନାହିଁ । ପୁଣି ସେହି ବସ୍ତୁ ଯେବେ ନିବିଡ, ଭାରୀ ହୁଅଇ ତେବେ ପୃଥିବୀର ନିକଟରେ ଥାଏ ଆଉ ସେହି ସ୍ଥାନେ ପ୍ରଜ୍ୱଳିତ ହୋଇ ବିଜୁଳି ହୋଇଲେ ସ୍ଥିରବାୟୁକୁ ତୀକ୍ଷ୍ଣ କରି ନିକଟସ୍ଥ ପ୍ରାଣିକୁ ନଷ୍ଟ କରଇ, ନିକଟସ୍ଥ ବସ୍ତୁର କ୍ଷତି କରଇ ।

---

## ଅଗ୍ନିର ବିଷୟ ।

ଶିଷ୍ୟ । ଅଗ୍ନି ବିଷୟ କିମତ ବୋଧ କର ?

ଗୁରୁ । ଯେମନ୍ତ ଜଳ, ବାୟୁ ଆବଶ୍ୟକ, ଉପକାରକ ତେମନ୍ତ ଅଗ୍ନି ଜାଣିବ ।

ଶିଷ୍ୟ । ଅଗ୍ନି କିରୂପରେ ମିଳଇ ?

ଗୁରୁ । ପ୍ରାୟେ ସର୍ବ ବସ୍ତୁରେ ଅଗ୍ନି ଅଛି । ଯେତେବେଳେ ଅଛନ୍ନ ହୋଇ ଥାଏ ସେତେବେଳେ ତାହାକୁ ଗୁପ୍ତ ତାପ କୁହା ଯାଏ ଯେବେ ବାହାରେ ପ୍ରକାଶ ପାଏ ତେବେ ଅଗ୍ନିରୂପେ ସର୍ବତ୍ର ବ୍ୟାପ୍ତ

ହୁଅଇ । ବାୟୁଠାରୁ ଅଗ୍ନି ଲଘୁ ଏହି କାରଣ ଅଗ୍ନିଶିଖା ଅତି ଶୀଘ୍ର ଉପରେ ଉଠଇ ଏହା ଦେଖା ଯାଉଏ ।

ଶିଷ୍ୟ । ତହିଁରେ ଆମ୍ଭମାନଙ୍କର ଫଳ କି?

ଗୁରୁ । ବହୁତ ଫଳ ଅଛି । ଦେଖ ଅଗ୍ନିରେ ସବୁ କଠିଣ ଧାତୁ ଦ୍ରବ ହୁଅଇ, ଜଳ ଭାପ୍ପ ହୁଅଇ, ଖାଦ୍ୟଦ୍ରବ୍ୟ ପକ୍ୱ କରା ଯାଉଏ ପୁଣି ଶୀତକାଳରେ ଗୃହମଧ୍ୟରେ ରଖିଲେ ଉଷ୍ଣତାରେ ଉପକାର ହୁଅଇ । ଅଗ୍ନି ନ ହେଲେ ରାତ୍ରିରେ ପ୍ରଦୀପାଦି ପ୍ରଜ୍ୱଳିତ ନୋହେ, ଅଲୁଅ, ଉଷ୍ଣତା ହୁଅଇ ନାହିଁ ।

ଶିଷ୍ୟ । ପଞ୍ଚଭୂତ କଅଣ?

ଗୁରୁ । ହିନ୍ଦୁ ପଣ୍ଡିତମାନେ ସବୁ ମୂଳଧାତୁ ଅର୍ଥାତ ପଦାର୍ଥର ସାରକୁ ପଞ୍ଚଭୂତ କରି କହନ୍ତି ଯଥା ପୃଥିବୀ, ଜଳ, ତେଜ, ବାୟୁ, ଆକାଶ । ଇଉରୋପୀୟ ପଣ୍ଡିତମାନେ କେବଳ ଚାରି ମୂଳ ଧାତୁ କହିଥିଲେ ଯଥା ଭୂମି, ଜଳ, ବାୟୁ, ଅଗ୍ନି । ମାତ୍ର ତାହାର ବିଦ୍ୟା ବୃତାନ୍ତ ନୁହଇ ଯେହେତୁ ମୂଳଧାତୁ ବୋଲି ସେ ଅସଳ, ଅଖଣ୍ଡନୀୟ ପୁଣି ଏତେବେଳେ ଜଣା ହେଲା ଯେ ମାଟିରେ ନାନା ପ୍ରକାର ଧାତୁଯୁକ୍ତ ଅଟଇ ବାୟୁରେ ଦୁଇ ପ୍ରକାର ଭାପ୍ପ ଅଛି ସେହିପରି ପାଣିରେ ଦୁଇ ଭିନ୍ନ ପ୍ରକାର ଭାପ୍ପ ପୁଣି ଜଳିବାବେଳେ ଯୋ ତେଜ, ତାପ ବାହାରଇ ତାକୁ ଅଗ୍ନି କୁହା ଯାଉଏ ।

---

ଗଣକବିଦ୍ୟା, ଜ୍ୟୋତିଷବିଦ୍ୟା ।

ଶିଷ୍ୟ । ଗଣକବିଦ୍ୟା ଜ୍ୟୋତିଷବିଦ୍ୟା ଏହି ଦୁଇରେ କି ବିଶେଷ ଅଛି?

ଗୁରୁ । କେହି ଲୋକ ଦୁଇକି ଏକସମାନ ଜ୍ଞାନ କରନ୍ତି ମାତ୍ର ଅତ୍ୟନ୍ତ ବିଶେଷ ଅଟଇ ଯେହେତୁ ଏକ ବିଦ୍ୟା ମିଥ୍ୟା ଅପକାରକ ଆନ ବିଦ୍ୟା ସତ୍ୟ ଉପକାରକ । ମନୁଷ୍ୟମାନଙ୍କର ଅଦୃଷ୍ଟ

ଯେ ଗ୍ରହାଦି ଦ୍ୱାରା ଜଣା ଯାଏ ଏଥିରେ ଇଉରୋପୀୟ ପ୍ରାୟ ସମସ୍ତ ଦେଶର ଲୋକ ଦୃଢ଼ ବିଶ୍ୱାସ କରୁଥିଲେ ପୁଣି ଜ୍ୟୋତିଷ-ବିଦ୍ୟା ଅଭ୍ୟାସ କରନ୍ତେ ଗଣକବିଦ୍ୟା ଖଣ୍ଡନ ହୋଇଲା । ଏତେ-ବେଳେ କୌଣସି ସୁଶିକ୍ଷିତ, ସୁବୁଦ୍ଧିମନ୍ତ ଲୋକ ଗଣକବିଦ୍ୟାରେ ବିଶ୍ୱାସ ନ କରନ୍ତି ।

ଶିଷ୍ୟ । ଏଦେଶରେ ପ୍ରାୟ ସମସ୍ତ ଲୋକ ଏହି ବିଦ୍ୟାରେ ପ୍ରତ୍ୟୟ କରନ୍ତି ଗଣକଙ୍କୁ ନ ଡାକିଲେ ଗୃହକୁ ନିର୍ମାଣ ଅଥବା ବିବାହାଦି ପ୍ରାୟ କୌଣସି କ୍ରିୟା କରିବାକୁ ନ ହୁଅଇ ।

ଗୁରୁ । ଏହି ଅତି ଆଶ୍ଚର୍ଯ୍ୟ ବିଷୟ । ଗଣକମାନେ ନିଜର ଭଲ ମନ୍ଦ ମରଣାଦି କିଛି କହି ନ ପାରନ୍ତି ତେଣୁ ପରର କଥା କେମନ୍ତେ କହି ପାରିବେ । ଅଜ୍ଞାନପଣ ଯେ ସେ ଅଶେଷ ଭ୍ରମର କାରଣ । ଜ୍ଞାନିମାନେ ଜାଣନ୍ତି ଯେ ସୃଷ୍ଟିକର୍ତ୍ତାର ଆୟତନରେ ଅମ୍ଭେମାନେ ଯେସନ୍ତ ଗ୍ରହାଦି ସବୁ ଚେଷ୍ଟମନ୍ତ ଅଛନ୍ତି ତାହାଙ୍କର ଆଜ୍ଞା ପ୍ରମାଣେ ସେମାନେ ଚାଲନ୍ତି ପୁଣି ଈଶ୍ୱର ଆମ୍ଭମାନଙ୍କର ଭଲମନ୍ଦ ବିଷୟରେ ନିର୍ଦ୍ଦିଷ୍ଟ କରନ୍ତି । ଜ୍ୟୋତିଷବିଦ୍ୟାରେ ସହଜରେ ଦେଖା ଯାଏ ଯେ ଗ୍ରହାଦି ଆମ୍ଭମାନଙ୍କର ଅଦୃଷ୍ଟରେ କିଛି ସମ୍ପର୍କୀ କି ଅଧିକାରୀ ନୁହନ୍ତି ।

ଶିଷ୍ୟ । କି ହେତୁରୁ ମନୁଷ୍ୟମାନେ ଗଣକବିଦ୍ୟା ମାନନ୍ତି ?

ଗୁରୁ । ଆଗତ କଥା ଜାଣିବାକୁ ମନୁଷ୍ୟମାନଙ୍କର ଅତ୍ୟନ୍ତ ବାଞ୍ଛା ଅଛି ଏଣୁ କୌଣସି ଚତୁର ଲୋକ ଯେବେ ସାହସ କରି କହଇ ଅମ୍ଭେ ଫଲଣା ଉପାୟରେ ତାହା ଜଣାଇବାକୁ ପାରିବା ତେବେ ଅବଶ୍ୟ ଥୋକାଏ ଅଜ୍ଞାନ ଲୋକ ତାକୁ ମାନିବେ ମାତ୍ର ସେ ଖଳଗଣକ ସେମାନଙ୍କ ଧନ ହରଣ କରି ଆପଣା ମନରେ ହାସ୍ୟ କରି ଚାଲି ଯାଏ । ଆଉ ଏକ କାରଣ ଏହି ଯେ ମନୁଷ୍ୟମାନେ ପିଲା ଦିନରେ ଯେଉଁ ନାନା ଅଦ୍ଭୁତ କଥା ଶୁଣନ୍ତି

ତାହା ବିବେଚନା ନ କରି ମନରେ ଦୃଢ଼ କରି ରଖନ୍ତି । ଏମନ୍ତ ବହୁତ ଭ୍ରମ କଥା ଅନେକ ଲୋକ ବିଶ୍ୱାସ କରନ୍ତି ।

ଶିଷ୍ୟ । ଭଲ ଜ୍ୟୋତିଷବିଦ୍ୟାରେ ଆମ୍ଭମାନଙ୍କର କି ଉପକାର ?

ଗୁରୁ । ଯେଉଁରୂପେ ଗଣକବିଦ୍ୟା ମନକୁ ଦୁର୍ବଳ କରି ନାନାଦି ଅମୂଳକ ଭୟରେ ତାକୁ ପରିପୂର୍ଣ୍ଣ କରଇ ତେମନ୍ତ ଜ୍ୟୋତିଷବିଦ୍ୟା ପରମେଶ୍ୱରଙ୍କ ଯଥାର୍ଥ ଶକ୍ତି, ଜ୍ଞାନ, ପ୍ରେମାଦି ବିଷୟରେ ଅତି ସୁନ୍ଦର ବୁଦ୍ଧି ଦିଅଇ କେବଳ ଈଶ୍ୱରଙ୍କଠାରେ ଭରସା, ବିଶ୍ୱାସ ରଖିବାକୁ ଶିକ୍ଷା ଦିଅଇ । ଏହା ଛଡ଼ା ଜ୍ୟୋତିଷବିଦ୍ୟା ଦ୍ୱାରା ନାବିକର ଭୂଗୋଳ କାଳଗତି ଇତ୍ୟାଦି ବିଷୟରେ ଜ୍ଞାନ ସୁସିଦ୍ଧ ହୁଅଇ । ଏହି ବିଦ୍ୟାରେ ନାବିକ ଲୋକ ଆପଣା ବୋଇତରେ ଚଢ଼ି ଅବାଟ ସମୁଦ୍ରରେ ଗଲେ ମାସକୁମାସ କେବଳ ଜଳ, ଆକାଶମଣ୍ଡଳଗଣ ଦେଖି ନାନାଦି ଦୂର ଦେଶକୁ ନିର୍ଭୟରେ ଯାଇ ବ୍ୟାପାର କରନ୍ତି । ଏଉପରେ ଜଗତରେ ଏକ ସୀମାରେ ଯେଉଁ ପଦାର୍ଥ ଉତ୍ପନ୍ନ ହୁଅଇ ତାହା ଆନ ସୀମାକୁ ଆସି ମନୁଷ୍ୟମାନଙ୍କର ଅନେକ ସୁଖ ଉପକାର ଜନ୍ମାଏ ।

ଶିଷ୍ୟ । ହେ ଅବଧାନ, ଭୂଗୋଳ ଜ୍ୟୋତିଷାଦି ବିଷୟରେ ତୁମ୍ଭେ ଯେତେ ଉପଦେଶ ଦେଇଅଛ ଆମ୍ଭର ତେତେ ଆଶ୍ଚର୍ଯ୍ୟଜ୍ଞାନ ଜନ୍ମ ହେଲା ଆପଣ ଆମ୍ଭକୁ ଅତ୍ୟନ୍ତ ଅନୁଗ୍ରହ କରିଅଛ ।

ଗୁରୁ । ହେ ଶିଷ୍ୟ, ତୁମ୍ଭେ ଏହି ଜ୍ଞାନର ଆରମ୍ଭ ମାତ୍ର ଶିଖିଅଛ ତୁମ୍ଭର ଅଧିକ ବୟସ ବୃଦ୍ଧି ପ୍ରାପ୍ତ ହୋଇଲେ ଯେବେ ଇଚ୍ଛା କରି ତେବେ ଏଥୁ ଅଧିକ ଗମ୍ଭୀର ବିଦ୍ୟା ଶିଖିବାକୁ ପାରିବ । ଏତେ-ବେଳେ ଦାଉଦ ରାଜାର ବାକ୍ୟ ମନରେ କର । ଯଥା । ଆକାଶ ଈଶ୍ୱରଙ୍କର ଗୌରବ ପ୍ରକଟ କରଇ ଆକାଶମଣ୍ଡଳ ତାହାଙ୍କର ହସ୍ତକୃତ କର୍ମ ପ୍ରକାଶ କରଇ । ପ୍ରତି ଦିବସ ବାକ୍ୟ ବୋଲଇ ପ୍ରତି ରାତ୍ର ଜ୍ଞାନ ଜନ୍ମାଏ । କୌଣସି ଉଚ୍ଚାରଣ ଅବା ଶବ୍ଦ ନୁହଇ ସେ-

ମାନଙ୍କ ରବ ଶୁଣା ନ ଯାଏ । ସେମାନଙ୍କ ଉପଦେଶ ସବ ଦେଶ-ରେ, ସେମାନଙ୍କ ବଚନ ପୃଥିବୀର ସୀମା ପର୍ଯ୍ୟନ୍ତେ ବ୍ୟାପିଅଛି । ସେ ସେମାନଙ୍କ ମଧ୍ୟରେ ସୂର୍ଯ୍ୟର ଆବାସ ରଖିଛନ୍ତି ସେ ଆପଣା କୋଠରିରୁ ଆସନ୍ତା ବରର ତୁଲ୍ୟ ବାହାରଇ ପୁଣି ବଳବନ୍ତ ପୁରୁଷ ପରି ଆପଣା ପଥେ ଧାଇଁବାକୁ ଆହ୍ଲାଦ ହୁଅଇ । ସେ ଆକାଶର ଏକ ସୀମାରୁ ବାହାରଇ ଅନ୍ୟ ସୀମା ପର୍ଯ୍ୟନ୍ତେ ବୁଲିକରି ଚଳଇ ତାହାର ତେଜରୁ କୌଣସି ବସ୍ତୁ ବଞ୍ଚିତ ନୁହଇ ।

ଇତି ଜ୍ୟୋତିଷବିଦ୍ୟା ସମାପ୍ତ ।